# ଆଦିମରୁ ଆଧୁନିକ

କୁମାର ହସନ୍

ପ୍ରଥମ ପ୍ରକାଶ :
କୁମାର ପୂର୍ଣ୍ଣିମା - ୧୯୯୭

ପ୍ରକାଶକ :
ପପୁଲାର୍ ପବ୍ଲିକେଶନ୍ସ୍
ଗୋଶାଳା ରୋଡ଼,
ନୂଆବଜାର, କଟକ-୪

ଅକ୍ଷରସଜ୍ଜା :



କଲ୍ୟାଣୀନଗର, କଟକ-୧୩

ମୁଦ୍ରଣ :
ଟେକ୍ନୋ ଆର୍ଟସ ଅଫ୍‌ସେଟ୍
କଲ୍ୟାଣୀ ନଗର, କଟକ-୧୩

ମୂଲ୍ୟ :
ଟ. ୩୫/-
(ପଇଁତ୍ରିଶ ଟଙ୍କା ମାତ୍ର)



**ADIMARU ADHUNIKA**

by
**KUMAR HASSAN**

Published by
POPULAR PUBLICATIONS
Gosala Road,
Nayabazar, Cuttack-4

First Publication : 1997

Price : Rs 35/-
(Rupees Thirty five only)

Digitized by srujanika@gmail.com

ଆମର ମାନ ଅପମାନ କ'ଣ ବାବୁ ? ମାନ ଅପମାନ ତ ସେମାନଙ୍କର, ଯେଉଁମାନଙ୍କର ଆମେ ସନ୍ତାନ । ଆମେ କୌଣସି ଛୋଟକାଟିଆ ଝିଅ ନୋହୁଁ । ଆଉ ମଜାକଥା କ'ଣ ଜାଣ ! ଏ ବଡ଼ ଜାତିର ଲୋକମାନେ ଶହଶହ ବର୍ଷ ହେଲା ନିଜ ଝିଅ ସଙ୍ଗେ ଶୋଇ ଆସୁଛନ୍ତି ! ଆଜିଯାଏ ଆମ ଘରକୁ କେହି ଗରିବ ଲୋକଟେ ଆସିନି । ବାପକୁ ପାପ ଲାଗୁଥିଲେ ତ କେବେଠୁ କ'ଣ ହୋଇ ଯାଆନ୍ତାଣି । ଭଗବାନ ବି ପୁରୁଷ ବାବୁ । ତେଣୁ ପୁରୁଷକୁ ସାହାଯ୍ୟ କରେ ।

ଆମଠୁ ବେଶୀ ଭେଦଭାବ ମେଣ୍ଟାଇବା ଶକ୍ତି ଆଉ କାହା ପାଖରେ ଅଛି ? ଆଉ କୋଉଠି କି ଯାଇ ମଣିଷ କ'ଣ ନିଜ ଜାତି ଧର୍ମ ଗୋତ୍ର ଭୁଲିପାରେ ? ମଦଭାଟି ଓ ଦାରୀର ଘର, ଏସବୁ ତ ପୂଜା ମନ୍ଦିର ଠାରୁ ଅନେକ ବଡ଼ ।

ଯଦି ଆମ ପାଖକୁ କେହି ନ ଆସନ୍ତି, ଧନ୍ଦା ତ ଆପେ ଆପେ ବନ୍ଦ ହୋଇଯିବ । ଆମେ ତ ପୁରୁଷ ପାଖକୁ ଯାଉନା, ପୁରୁଷ ହିଁ ଆସେ । ନେତା ସାଜି ବଡ଼ ବଡ଼ ଭାଷଣ ଝାଡ଼ିବା ଓ ରାତିରେ ରେଷ୍ଟ ହାଉସ୍‌କୁ ଡକାଇ, ମଦ୍‌ଖାଇ ଆମ ଜଂଘ ସନ୍ଧିରେ ମୁହଁ ଗୁଂଜି ଶୋଇବା, ଆମେ ତ ଏ ଯାଏ ସବୁ ଦେଖି ଆସିଛୁ । ସ୍ତ୍ରୀକୁ ହିଁ ସ୍ତ୍ରୀଠାରୁ ବେଶୀ ବିପଦ । ମରଦ ମହତ ଲୁଟେ, ହେଲେ ଲୁଟାଏ କିଏ, ଲୁଟିବାକୁ ବାଧ କରେ କିଏ, ଜଣେ ସ୍ତ୍ରୀ ତ !

ଐତିହାସିକ କ୍ରମବିବର୍ତ୍ତନରେ ସମଗ୍ର ବିଶ୍ୱ ପରିପ୍ରେକ୍ଷୀରେ ବେଶ୍ୟାର ସଂସାର ଭିତରକୁ ଏକ ଦୁର୍ଗମ ଅନ୍ତର୍ଯାତ୍ରା... ଏକ ଅନନ୍ୟ ଅଭିଯାତ୍ରା ପ୍ରଥମ ଥର ପାଇଁ ।

Digitized by srujanika@gmail.com



**କୁମାର ହସନ୍**

ଓଡ଼ିଆ କବି, କଥାକାର, ଅନୁବାଦକ । ଜନ୍ମ - ଅକ୍ଟୋବର ୨୦, ୧୯୬୦, ସମ୍ବଲପୁର । ଏ ପର୍ଯ୍ୟନ୍ତ ଓଡ଼ିଆ ଓ ହିନ୍ଦୀରେ ୨୫ ଖଣ୍ଡରୁ ଊର୍ଦ୍ଧ୍ୱ ପୁସ୍ତକ ପ୍ରକାଶିତ । ତାଙ୍କ ରଚନା ବିଭିନ୍ନ ଭାରତୀୟ ଭାଷା ସମେତ ଇଂରାଜୀ, ଋଷୀୟ, ଫରାସୀ ଭାଷାରେ ଅନୂଦିତ । ଅନିୟମିତ ସାହିତ୍ୟ ପତ୍ର 'ମନୀଷା'ର ସମ୍ପାଦନା ଓ ପ୍ରକାଶନ ।

ଉଲ୍ଲେଖନୀୟ ସାହିତ୍ୟକୃତି ଲାଗି ବିଶ୍ୱଶାନ୍ତି ପରିଷଦ, ଫିନ୍‌ଲେଣ୍ଡରୁ ସମ୍ବର୍ଦ୍ଧନା (୧୯୭୬), ଓଡ଼ିଶା ରାଜ୍ୟ ପୁରସ୍କାର (୧୯୭୮-୭୯), ଜାତୀୟ ପୁରସ୍କାର (୧୯୮୦-୮୧), ବସନ୍ତ ମୁଦୁଲି କବିତା ପୁରସ୍କାର (୧୯୮୮), ଦୁର୍ଗେଶ ଖାଡ଼ଙ୍ଗା କବିତା ପୁରସ୍କାର (୧୯୯୦), ଡ. ଆମ୍ବେଦକର ଫେଲୋସିପ୍ (୧୯୮୯) । ରାଜ୍ୟ ଓ ରାଜ୍ୟ ବାହାରର ବହୁ ଅନୁଷ୍ଠାନରୁ ସମ୍ବର୍ଦ୍ଧନା ଓ ମାନପତ୍ର ପ୍ରାପ୍ତି ।

Digitized by srujanika@gmail.com

# ମଂଗଳାଚରଣ

ଗାଁରେ ରହୁଥିଲାବେଳେ ଜଣେ ଭଂଡାରୀ ଝିଅ ସଂସ୍ପର୍ଶରେ ଆସିଥିଲା ଦୁଃଖୀ । ଗାଁ ଲେଖାରେ ସେ ମୋର ଦୁଃଖୀ ନାନୀ । ଖୁବ ଭଲପାଉଥିଲା ମୋତେ । ସେତେବେଳେ ମୋତେ ସାତ କି ଆଠ ବର୍ଷ ବୟସ ।

ବଡ଼ ବଦନାମ୍ ଝିଅଟେ । ସମସ୍ତେ ତା'ଙ୍କୁ ଉପରେ ଉପରେ ଖୁବ୍ ଘୃଣା କରୁଥିଲେ । ମୁହଁ ଉପରେ କହି ଦେଉଥିଲେ । ଗାଁର ସେ ଥିଲା ସାମୁହିକ ସଉତୁଣୀ ସ୍ତ୍ରୀମାନଙ୍କର । ସବୁ ଶୁଣି ସେ ଖାଲି ହସି ଦେଉଥିଲା । ବଡ଼ ନିର୍ବିକାର, ସରଳ, ସହଜ ସେ ହସ । ପ୍ରାଣୋଚ୍ଛ୍ୱାସରେ ଭରପୂର ।

ଜୀବନରେ ଦୁଃଖୀନାନୀ କାହାକୁ ନା କହି ନାହିଁ । ମନା କରି ନାହିଁ । ପାଂଚ-ପଂଦର ବର୍ଷର ପିଲାଠୁ ପଚାଶ-ଷାଠିଏ ବର୍ଷର ଥୁରୁଥୁରୁ ବୁଢ଼ା ପର୍ଯ୍ୟନ୍ତ । ବାପକୁ ମନାକରି ନାହିଁ କି ପୁଅ, ନାତିକୁ ବି ମନା କରି ନାହିଁ । ହେଲେ ଦେହଦାନ ବଦଳରେ କେବେ କାହାଠାରୁ କିଛି ମାଗି ନାହିଁ । ପଇସାଟିଏ, ଲୁଗା ଖଣ୍ଡେ, କି ବାସ୍ନାତେଲ, ସାବୁନ୍, ନଖ ପଲିସ୍, ପାଉଡ଼ର କିଛି ହେଲେ ନାହିଁ । ଦେଇ ଦେଇ ସେ ହୋଇ ଯାଇଥିଲା ଦେବୀ ।

ଯେଉଁମାନେ ତା' ସଂଗେ ଯେତେ ବେଶି ନିବିଡ଼ ହେଉଥିଲେ ସେମାନେ ତା'ର ସେତେ ବେଶି ବଦନାମ୍ କରୁଥିଲେ । ଏ କଳଂକି ତା' ମଥାରେ ସିଂଦୂର କି ହାତରେ ଶଂଖା ଲାଗିବାକୁ ଦେଇ ନଥିଲା । ଶେଷରେ ଅବସ୍ଥା ଏମିତି ହେଲା ଯେ ଦିନେ ତା' ବୁଢ଼ାବାପ ତାକୁ ନେଇ ରାତାରାତି ଗାଁ ଛାଡ଼ି ଦେଇଥିଲା । ଗଲାବେଳେ ଦୁଃଖୀନାନୀ ଦୁଃଖରେ ଖୁବ୍ କାନ୍ଦିଥିଲା । କାନ୍ଦିକାନ୍ଦି ଗଡ଼ି ଯାଇଥିଲା ମାଟିରେ ।

ମଝିରେ ଅନେକ ବର୍ଷ ବିତି ଯାଇଛି । ମୁଁ ସମ୍ବଲପୁର ସହରକୁ ଆସିଲାପରେ ତା' ଦାଦା ରୂପଧର ସଂଗେ ଅଚାନକ ଥରେ ଦେଖା ହୋଇଯାଇଥିଲା ଗୋଲବଜାର ଛକରେ । ତା'ଠାରୁ ଶୁଣିଲି ଯେ ତା' ବାପମା' କେବେଠୁ ମରି ହଜି ଗଲେଣି । ବଡ଼ ଭଉଣୀ ରଂଭା ଗୋଟେ କାହା ସଂଗେ ପଳାଇ ଯାଇଛି । ଆଉ ମୋର ଦୁଃଖୀ ନାନୀ ? ଜାତି, ଧର୍ମ, ବର୍ଣ୍ଣ, ବୟସ ନିର୍ବିଶେଷରେ ସମସ୍ତଙ୍କୁ ଶାରୀରିକ ଓ ମାନସିକ ସୁଖ ଦେଇ ଦେଇ ନ ଚାହିଁଲା ପରେ ବି ଆମ ସମାଜ ତାକୁ ଦେଇଥିବା ଦୁରାରୋଗ୍ୟ ଯୌନବ୍ୟାଧିର ଶିକାର ହୋଇ ତିଳ ତିଳ କରି ମରିଯାଇଛି ଅତି ଅସହାୟ ଭାବରେ ।



Digitized by srujanika@gmail.com

ରୂପଧର ଦା' କହୁଥିଲା ଦୁଃଖୀନାନୀ ମୋତେ ଖୁବ୍ ମନେପଡ଼ାଉଥିଲା । ମନେପକାଇ ଖୁବ୍ କାନ୍ଦୁଥିଲା । ତା' ଶେଷ ଜୀବନ କଥା କେବେ ଦେଖାହେଲେ ମୋତେ ନ କହିବାକୁ ରୋଗଶଯ୍ୟାରେ ତା' ଦାଦାକୁ କେତେ ନେହୁରା ହୋଇଥିଲା । ସେ ମୋତେ ଖୁବ୍ ଭଲ ପାଉଥିଲା ବୋଲି କହି କାନ୍ଦି ପକାଇଥିଲା ରୂପଧର ଦାଦା ।

ଦୁଃଖୀନାନୀ ମୋତେ କାଖ କରିଛି, କୋଳ କରିଛି, ଲୋକଗୀତ ଶୁଣେଇଛି । ଦୁଃଖୀନାନୀ ନିଜେ ସବୁ ଦୁଃଖର ବିଷ ପିଇ ସମସ୍ତଙ୍କୁ ଅମୃତ, ସଂଜୀବନୀ ବାଂଟିଥିଲା । ସେ ଦେହ ବେପାର କରୁନଥିଲା । ଦେଶ-ବିଦେଶର ଦେହ ବେପାର କରୁଥିବା ଝିଅମାନଙ୍କ ବିଷୟରେ ଯେତେବେଳେ ବି କିଛି ପଢ଼ିଛି, ସେତେବେଳେ ଦୁଃଖୀନାନୀକୁ ଗାଁ ଗୋହିରୀରେ ଛେଳି ଚରଉଥିବାର, 'ସଜନୀ ଗୀତ' ଗାଉଥିବାର ଦେଖିବାକୁ ପାଇଛି ।

ଦୁଃଖୀନାନୀକୁ ଏପରି କାହିଁକି କରୁଛୁ ବୋଲି କହିଲେ ସେ ହସିଦେଇ କହେ, ଆରେ ବାବୁ ଦୁଇଦିନିଆ ଜୀବନରେ କାହା ମନରେ ଦୁଃଖ ଦେଇ ଲାଭ କ'ଣ । ଏ ଦେହଟା ତ ଦିନେ ପଚିସଢ଼ି ମାଟିରେ ମିଶିଯିବ । କାହାକୁ ଯଦି ଏଥିରୁ କିଛି ଆନନ୍ଦ ମିଳିଲା, ସେଥିରେ ମୋର କ୍ଷତି କ'ଣ ? ଆଉ ସେତେବେଳେ ମୁଁ ନିରୁତ୍ତର ହୋଇ ଯାଉଥିଲି । ତା' ବିଷୟରେ ମୁଁ ଅନେକ ଥର କିଛି ଲେଖିବାକୁ ଚାହିଁଛି, ହେଲେ ମୋ ଦୁଃଖୀନାନୀ ପାଖରେ ମୋ କଲମ ବାମନ ହୋଇଯାଇଛି ।

ପୃଥିବୀର ବିଭିନ୍ନ ବେଶ୍ୟା-ସାହିତ୍ୟ ପଢ଼ିଲାବେଳେ ଗୌରୀ ଦେବୀ, ରେଖା, ରମ୍‌ମୋ, ଲୀଳା, ସାହିରା, ଚଂଦ୍ରପ୍ରଭା, ଶାଂତି, ରାଧା, ରାମକଲି, ଶକୁନ୍ତଳା, ଚନ୍ଦ୍ରମୁଖୀ, ରୂପମତୀ, ମୀରା, ଅନାରକଲି, ରାମରତି, ଚନ୍ଦ୍ରକଳା, ସୌରଭ, କୁନ୍ତୀ, ନୟନା ଓ ଅନ୍ୟାନ୍ୟ ସମସ୍ତ ବଦନାମ ଗଳିର ନାୟିକାମାନଙ୍କ ମୁହଁରେ ଦୁଃଖୀନାନୀର କିଛି କିଛି ଝଲକ ଦିଶିଛି । ସେହି ଝଲକ ହିଁ ମୋତେ ''ମହାମାୟା''ର ଆକର୍ଷଣ ଦେଇଛି, ଯାହାର ଫଳଶ୍ରୁତି ଏ ବହିଟି ।

ବେଶ୍ୟାବୃତ୍ତିର ସଂସାର ଏକ ବ୍ୟାପକ ସଂସାର । ପାଞ୍ଚକୋଟି ବର୍ଷ ଗହୀରରେ ଏହାର ଅମରୀ ଚେର ଡ଼ାଳ, ପତ୍ର, ଫୁଲ ମେଲି ଚାଲିଛି । ବେଶ୍ୟାବୃତ୍ତି ଏକ ବ୍ୟାପକ ବିସ୍ତୃତି, ସାମାଜିକତାର ସମାଜ ବିଜ୍ଞାନ । ଯେତେ ଲେଖିଲେ ବି ଏ ସତ୍ୟର ପ୍ରକୃତ ସ୍ୱରୂପ ଉଦ୍‌ଘାଟିତ ହୋଇପାରିବା ଅସଂଭବ । ବ୍ରହ୍ମାଙ୍କ ବରପ୍ରାପ୍ତର ଦୈର୍ଘ୍ୟ ଓ ଗଭୀରତା ମାପିବାର ସ୍କେଲ୍ ନାହିଁ କାହା ପାଖରେ । ଏ ବହିକୁ ଏକ ମଂଗଳାଚରଣ ବୋଲି ଧରି ନିଆଯାଇପାରେ । ସମଗ୍ର ମାନବତା ପକ୍ଷରୁ ଏହା ଏକ ବିକଳ ପ୍ରାୟଶ୍ଚିତର ପ୍ରଚେଷ୍ଟା । ସେ ସମସ୍ତଙ୍କ ପାଖରେ ମୁଁ ଲଜ୍ଜିତ ଓ ନତମସ୍ତକ ।

ମନୀଷା ଇଂଟରନେଶନଲ,
ଭୁତାପଡ଼ା, ସମ୍ବଲପୁର - ୭୬୮୦୦୧



Digitized by srujanika@gmail.com

# ବିଷୟକ୍ରମ



*Digitized by srujanika@gmail.com*



Digitized by srujanika@gmail.com

## ଦେହ ବେପାରର ସମୃଦ୍ଧ ଶିଳ୍ପ :

ପୃଥିବୀର ପ୍ରାଚୀନତମ ବେପାର ବେଶ୍ୟାବୃତ୍ତି ଇତିହାସ, ସମାଜ, ଧର୍ମ କ୍ଷେତ୍ରରେ ବହୁ ବୈପ୍ଳବିକ ପରିବର୍ତ୍ତନ ପରେ ମଧ୍ୟ ଯେମିତିକୁ ସେମିତି ରହିଛି । କେବଳ ଏତିକି ମାତ୍ର ପରିବର୍ତ୍ତନ- ଆଗ ଯେଉଁ ବେଶ୍ୟାମାନେ ଏହାକୁ ବ୍ୟକ୍ତିଗତ ଲାଭର ମାଧ୍ୟମ କରି ରଖିଥିଲେ ଆଜି ସେମାନେ ସେ ଧନ୍ଦାର କେବଳ ବିକ୍ରି ଲାଗି ଗଚ୍ଛିତ ଏକ ପଣ୍ୟଦ୍ରବ୍ୟରେ ପରିଣତ ହୋଇ ସାରିଛନ୍ତି । ସମଗ୍ର ଧନ୍ଦାଟା ଏତେ ସୁସଂଗଠିତ ଦେହ ବେପାର ସିଂଡ଼ିକେଟ୍ ବା ମାଫିଆ ଗଡ୍ ଫାଦର ହାତକୁ ଚାଲିଯାଇଛି ଯେଉଁମାନେ ଏହା ମାଧ୍ୟମରେ ଏକ ନବ୍ୟ ଧନ କୁବେର ଭାବରେ ଆବିର୍ଭୂତ ହେଉଛନ୍ତି ।

ସାଂପ୍ରତିକ ବିଶ୍ୱରେ ଅର୍ଥର ମହତ୍ତ୍ୱ ଯେତେ ତୀବ୍ର ଭାବରେ ବଢ଼ୁଛି, ତାକୁ ପାଇବାର ସାଧନର ପବିତ୍ର ଅପବିତ୍ର ଚିନ୍ତା ମଧ୍ୟ ସେତେ କ୍ଷିପ୍ର ଗତିରେ ହ୍ରାସ ପାଉଛି । ଏହା ଫଳରେ ବିଶ୍ୱର କୋଣ–ଅନୁକୋଣରେ ଯୌନବେପାର ତୀବ୍ର ଗତିରେ ବୃଦ୍ଧି ପାଉଚାଲିଛି । ଏ ବେପାରରେ ଧନୀ, ସମୃଦ୍ଧ ଦେଶର ସ୍ଥିତି ଉପଭୋକ୍ତା ଗ୍ରାହକର ହେଲାବେଳକୁ ଦରିଦ୍ର ରାଷ୍ଟ୍ରର ଭୂମିକା ଭୋଗ୍ୟଦ୍ରବ୍ୟଠାରୁ ବେଶି ହୋଇ ନାହିଁ । ଏହି ନିର୍ମମ ଦୁଶ୍ଚକ୍ର ଘେରରେ ସେଇ ସ୍ତ୍ରୀମାନେ ପେଷି ହେଉଛନ୍ତି, ଯେଉଁମାନେ ଦିନେ ଭଲ ପତ୍ନୀ, ଭଲ ମା' ବା ଭଲ ସ୍ତ୍ରୀ ହେବାର ସ୍ୱପ୍ନ ଦେଖୁଥିଲେ । ହେଲେ ମଧ୍ୟସ୍ଥ ଦଲାଲମାନଙ୍କ ଧନଲିପ୍ସା ସେମାନଙ୍କୁ ବେଶ୍ୟାରେ ପରିଣତ କଲା, ଯାହାକୁ ଯେତେବେଳେ ଯିଏ ଚାହିଁବ ଗୋଟାଏ ନିର୍ଦ୍ଧାରିତ ମୂଲ୍ୟ ପଇଠ କରି ନିଜ ବାସନାର ଶିକାର କରିପାରିବ ।

ଏ ଧନ୍ଦାଟା କେତେ କ୍ଷିପ୍ର ଗତିରେ ବୃଦ୍ଧି ପାଉଛି ତା'ର ଏକ ସାଧାରଣ ଉଦାହରଣ ଇ-୫୫ । ଜର୍ମାନ ଓ ଚେକୋସ୍ଲୋଭାକିଆ ସୀମାରେ ଇ-୫୫ ଏକ ବିଖ୍ୟାତ ରାଜପଥ । ଏ ରାଜପଥରେ ଅଗଣିତ ମାଲବାହୀ ଟ୍ରକ୍ ତ ଯା' ଆସ କରୁଥାଏ, ତା' ସାଂଗକୁ ପ୍ରତିବେଶୀ ଦେଶକୁ କାମ ଖୋଜି ବାହାରିଥିବା ଲୋକଙ୍କ ଗହଳି ମଧ୍ୟ କମ୍ ନୁହେଁ । ସେଠି ପ୍ରତି ଶନିବାର ସଂଧ୍ୟାରେ ଏକ ମେଳା ମଉଛବର ବାତାବରଣ । ଏ ମେଳାରେ କେବଳ ଗୋଟାଏ ଜିନିଷ ବିକ୍ରି ହୁଏ– ନାରୀର ଦେହ । ବିଭିନ୍ନ ବୟସ, ବିଭିନ୍ନ ଶାରୀରିକ ସଂଗଠନ, ବିଭିନ୍ନ ଭାଷାଭାଷୀ ସ୍ତ୍ରୀମାନେ ରଂଗବେରଂଗ ଉତ୍ତେଜକ ବେଶପୋଷାକରେ ରାସ୍ତାଧାରରେ ଠିଆ ହୋଇ ରୂପ, ସୌନ୍ଦର୍ଯ୍ୟ, ଆଂଗିକ ପ୍ରଦର୍ଶନ ମାଧ୍ୟମରେ ବାଟୋଇମାନଙ୍କୁ ଖୋଲା ନିମନ୍ତ୍ରଣ ଦିଅନ୍ତି । ବର୍ଲିନ୍‌ରୁ ପ୍ରାଗ୍ ଯାଏ ଯାଇଥିବା ଏ ରାଜପଥର ଏଇ ୧୨ କିଲୋମିଟର ଲମ୍ବ ବିଶେଷ ସ୍ଥାନଟା ସେତେବେଳେ ବାଟୋଇମାନଙ୍କ ''ଶସ୍ତା ପ୍ରେମର ସମୃଦ୍ଧ ବଜାର' ହୋଇ ସାରିଥାଏ ।



Digitized by srujanika@gmail.com

## ଇ-୫୫ ହିଁ ଏକମାତ୍ର ଯୌନ ମେଳା ନୁହେଁ :

ଇ-୫୫ ହିଁ ପୃଥିବୀର ଏକମାତ୍ର ଯୌନ ମେଳା ହୋଇ ନାହିଁ । ବିଶ୍ୱର ବିଭିନ୍ନ ସ୍ଥାନରେ ଏମିତି ଦେହ ବେପାର କେନ୍ଦ୍ର ଚାଲିଛି । ନେପାଳର ଗ୍ରାମାଞ୍ଚଳରୁ ପ୍ରତିବର୍ଷ ଅନ୍ୟୂନ ସାତହଜାର କିଶୋରୀ କ୍ରୟ କରି ବା ବିଭିନ୍ନ ଭାବରେ ପ୍ରଲୋଭିତ କରି ବିଶ୍ୱର ବିଭିନ୍ନ ବେଶ୍ୟାଳୟକୁ ପଠାଇ ଦିଆଯାଏ । ଦାରିଦ୍ର୍ୟ କବଳିତ ବଂଗଳାଦେଶ ମଧ୍ୟ ଯୌନ ମାଫିଆଙ୍କ ଉତ୍କୃଷ୍ଟ ଚାରଣ ଭୂମି । ପାକିସ୍ତାନ ଓ ଭାରତର କମ୍‌ବୟସୀ ମୁସଲିମ୍ ଝିଅମାନଙ୍କୁ ବିବାହ ଆଳରେ ଉପସାଗରୀୟ ଅଂଚଳକୁ ଚାଲାଣ କରିବା କଥା ଆଜି ଏକ ମାମୁଲି ଖବର ଯେ କୌଣସି ସଂବାଦପତ୍ରର । କେବେ କେମିତି ଅମୃତା ଅହଲୁୱାଲିଆଙ୍କ ପରି କୌଣସି ସହୃଦୟା ଏଆରହୋଷ୍ଟେସ୍‌ଙ୍କ ସତର୍କତା ଫଳରେ ହିଁ କୌଣସି ବାରବର୍ଷିୟା ଅମୀନା କୌଣସି ବାଷଠି ବର୍ଷିୟ ଶେଖ୍‌ର ବାସନାର ଶିକାର ହେବାରୁ ରକ୍ଷା ପାଇଗଲାପରେ କେତେକ ମହିଳା ସଂଗଠନ ଓ ଖ୍ୟାତିଲିପ୍ସୁ ନେତା ପାଞ୍ଚ-ଦଶ ଦିନ କୁମ୍ଭୀର କାନ୍ଦଣା କାନ୍ଦି ଏ ଅମାନବିୟ ଘଟଣା ବିରୋଧରେ ନିଜ ଓରମାନ ମେଣ୍ଟାଇପାରନ୍ତି, ନହେଲେ ପୃଥିବୀରେ କେଉଁଠି କ'ଣ ହେଲା କାହାର କ'ଣ ଯାଏ ?

ସୁଦୂର ଆମାଜନ୍ ଉପତ୍ୟକାର ଖଣି ଖାଦାନ ଖଟୁଥିବା ଲକ୍ଷ ଲକ୍ଷ ଶ୍ରମିକଙ୍କ ମନୋରଞ୍ଜନ ଲାଗି ବଳପୂର୍ବକ ବେଶ୍ୟାବୃତ୍ତିର୍ରେ ପ୍ରବୃତ୍ତ କରାଯାଇଥିବା ବ୍ରାଜିଲର ଝିଅମାନଙ୍କ ସଂଖ୍ୟା ସଂପ୍ରତି ୩୦ ହଜାରରୁ ଉର୍ଦ୍ଧ୍ୱରେ, ଯେତେବେଳେ କି ବୋଲୋନା, ଆମେରିକାରେ ହିଁ ଶହ ଶହ ନାଇଜିରୀୟ ଝିଅ ନିଜର ଦେହ-ପୁଂଜିରେ ପ୍ରାୟୋଜକ ମାଫିଆମାନଙ୍କ ଟ୍ରେଜେରି ଉର୍ଜିକରି ଚାଲିଛନ୍ତି । କେବଳ ଏତିକି ନୁହେଁ ଘାନାର ବହୁ ଶ୍ୟାମାଂଗୀ ସୁନ୍ଦରୀମାନେ ନିଜ ଯୌବନର ବେପାର କରି ଏଂଟବର୍ପର ଆଖିଝଲସିଆ ଆଲୁଅ ତଳେ କୋଟି-କୋଟି ଟଙ୍କା ରୋଜଗାରର ସାଧନ ହୋଇଛନ୍ତି । ମିଆମି, ଫ୍ଲୋରିଡ଼ାର ସମୁଦ୍ର କୂଳରେ ଯେଉଁ ଅଗଣିତ ମେସେଜ୍ ରୁମ୍ ବା ମାଲିସ ଘର ଖୋଲା ହୋଇଛି, ସେଠାରେ ମଧ୍ୟ ପ୍ରଚ୍ଛନ୍ନ ବେଶ୍ୟାବୃତ୍ତି ପାଇଁ କଲମ୍ବିଆ, ନିକାରାଗୁଆ ଓ କାନାଡ଼ାର ବହୁ ଗରିବ ଝିଅମାନଙ୍କ ଆମଦାନି ଚାଲିଛି । କେବଳ ଭାରତରେ ହିଁ ବାଳବେଶ୍ୟାମାନଙ୍କ ସଂଖ୍ୟା ଚାରି ଲକ୍ଷରୁ ଅଧିକା ।

ଏବେ ପ୍ରଶ୍ନ ହେଲା, ସଭ୍ୟତାର ଶୀର୍ଷ ଦେଶରେ ପହଞ୍ଚିଥିବା ଏ ଦେଶସବୁର ସରକାର ଏଥିପ୍ରତି କାହିଁକି ଆଖିବୁଜି ଦେଇଛି ? ଏହାର ଏକମାତ୍ର ଉତ୍ତର ଏଇୟା ହୋଇପାରେ ଯେ, ସରକାର ଚାହିଁକି ମଧ୍ୟ ଏ ପ୍ରାଚୀନତମ ବେପାରକୁ ରୋକିବାରେ ସମର୍ଥ ହୋଇପାରୁନି, କାରଣ ଏ ଧନ୍ଦାର ଶାଙ୍କୁଚ ବେପାରୀ ଓ ଏଥିରେ ଆନନ୍ଦ ଅନୁଭବ କରୁଥିବା ସାଧାରଣ ଲୋକେ ତୁ ଡାଳେ ଡାଳେ ଗଲେ ମୁଁ ପତ୍ରେ ପତ୍ରେ, ରଣନୀତିରେ ଏତେ ଦକ୍ଷତା ହାସଲ କରିଛନ୍ତି ଯେ ସେଠି ସବୁ ନୀତି ନିୟମ ଫସର ଫାଟି ଯାଉଛି ।



Digitized by srujanika@gmail.com

ପ୍ରତିବର୍ଷ ପ୍ରାୟ ଲକ୍ଷେ ଜର୍ମାନ ଯଦି ମର୍ଯ୍ୟାଦାଭାବରେ ଟିକ ଥାଇଲେଣ୍ଡ ଯାତ୍ରା କରନ୍ତି ଓ ସେଠାକାର ପ୍ରାକୃତିକ ପରିବେଶରେ ଥାଇ ସ୍ତ୍ରୀମାନଙ୍କ ସହିତ ସ୍ୱଚ୍ଛନ୍ଦ ବିହାର କରନ୍ତି, ତେବେ ତାକୁ କିଏ ଅଟକାଇ ପାରିବ ?

ସଂପ୍ରତି ଥାଇଲେଣ୍ଡରେ ଯେଉଁ କୋଡ଼ିଏ ଲକ୍ଷାଧିକ ସ୍ତ୍ରୀ ବାରାଙ୍ଗନା ଭାବରେ ଜୀବନ ଯାପନ କରୁଛନ୍ତି, ସେମାନଙ୍କ ମଧ୍ୟରୁ ଅପ୍ରାପ୍ତବୟସ୍କାମାନଙ୍କ ସଂଖ୍ୟା କେତେ, ସେ ନେଇ ମଧ୍ୟ ପ୍ରଶ୍ନ ଉଠୁଛି । ଏମାନଙ୍କ ମଧ୍ୟରୁ କେତେ ଅଭିଭାବକମାନଙ୍କ ଦ୍ୱାରା ବେଶ୍ୟାଗୃହରେ ବିକ୍ରି ହୋଇଛନ୍ତି, କେତେ ଜଣକୁ ଚାକିରିର ପ୍ରଲୋଭନ ଦେଖାଇ ଠକା ଯାଇଛି, କେତେ ଜଣକୁ ଅଶାନ୍ତିଗ୍ରସ୍ତ ମ୍ୟାମାର ର ଦୂରନ୍ତ ଗାଁ ଗହଳରୁ ଫୁସୁଲା-ଫୁସୁଲି କରି ଅଣାଯାଇଛି ବା ବଳ ପ୍ରୟୋଗ କରି ଅପହରଣ ହୋଇ ଆସିଛନ୍ତି । ଏବେ କେଇ ବର୍ଷ ହେଲା ଏ ପ୍ରଶ୍ନ ପ୍ରତି ଲୋକଙ୍କ ଆଗ୍ରହ ବୃଦ୍ଧି ପାଇଥିବା ଲକ୍ଷ୍ୟ କରାଯାଇଛି । ଏବେ ଯେତେବେଳେ ଏ ବିଷୟରେ ଗବେଷଣା ଆରମ୍ଭ ହେଉଛି, ସେ ଅବସ୍ଥାରେ ଏହାର ନିରାକରଣ କଥା କେବେ ଚିନ୍ତା କରାଯିବ, କିଏ କହିପାରେ ?

୧୯୯୧ରେ ଆନୁଷ୍ଠିତ ଦକ୍ଷିଣ-ପୂର୍ବ ଏସିଆର ମହିଳା ସଂଗଠନଗୁଡ଼ିକର ଏକ ସମ୍ମିଳନୀରେ ଏ ତଥ୍ୟ ଉପସ୍ଥାପିତ କରାଯାଇଥିଲା ଯେ, ଅଷ୍ଟମ ଦଶକର ମଧ୍ୟଭାଗରୁ ୧୯୯୧ ମସିହା ପର୍ଯ୍ୟନ୍ତ ଅର୍ଥାତ୍ ମାତ୍ର ୬-୭ ବର୍ଷ ମଧ୍ୟରେ ଉପରୋକ୍ତ ଅଞ୍ଚଳରେ ପ୍ରାୟ ତିନି କୋଟି ମହିଳାଙ୍କୁ ବିଶ୍ୱର ବେଶ୍ୟାଳୟମାନଙ୍କରେ ବିକ୍ରୟ କରାଯାଇଛି । ହେଲେ ଏଇଟା ମଧ୍ୟ ଏକ ଆନୁମାନିକ ସଂଖ୍ୟା, ଯାହା କିଛି ଲିଖିତ ପ୍ରମାଣ ଆଧାରରେ ହିସାବ କରାଯାଇଛି । କାରଣ ଏ କ୍ଷେତ୍ରରେ ଅଚାନକ ନିରୁଦ୍ଦିଷ୍ଟ ହୋଇଥିବା ଝିଅ ଓ ସ୍ତ୍ରୀମାନଙ୍କ ବିଷୟରେ ପୋଲିସକୁ ସାଧାରଣତଃ ପାରିବାରିକ ମାନ ମର୍ଯ୍ୟାଦା ଦୃଷ୍ଟିରୁ ସୂଚିତ କରାଯାଇ ନଥାଏ । ସେଥିଲାଗି ଏ ତିନିକୋଟି ସଂଖ୍ୟାଟା ବାସ୍ତବ ସଂଖ୍ୟାର ଏକ ନଗଣ୍ୟ ଅଂଶମାତ୍ର ।

**ସଭ୍ୟତାର ଅସଭ୍ୟତା :**

ତୃତୀୟ ବିଶ୍ୱ ରାଷ୍ଟ୍ରଗୁଡ଼ିକର ଅତ୍ୟଧିକ ଦାରିଦ୍ର୍ୟ ମଧ୍ୟରେ ଏଭଳି ଜଘନ୍ୟତମ ବ୍ୟାପାରର ବ୍ୟାପ୍ତିକୁ କିଛି ପରିମାଣରେ ସେମାନଙ୍କ ଅସହାୟତାର ଫଳ ବୋଲି ମନେ କରାଯାଇପାରେ । ହେଲେ ସମୃଦ୍ଧିର ଶିଖରରେ ବସିଥିବା ଇଉରୋପରେ ହିଁ କେତେକ ଦେଶର ଅବସ୍ଥା ଏହାଠୁ ବଳି ଦୟନୀୟ । କିଏ ଚିନ୍ତା କରିପାରିଥିଲା ଯେ ପୂର୍ବ-ଇଉରୋପିୟ ଦେଶଗୁଡ଼ିକରେ ସୋଭିଏତ ଛତ୍ର ହଟିଲା ମାତ୍ରକେ ସେଠାକାର ଦେହ ବେପାର ଓ ନାରୀ-ବିକ୍ରୟର ମୋଟା ସଂଖ୍ୟା ବିଶ୍ୱର ସଂବାଦପତ୍ରଗୁଡ଼ିକର ହେଡ୍‌ଲାଇନ୍‌ରେ ପରିଣତ ହେବ ? ଦାରିଦ୍ର୍ୟ କବଳିତ ଏହି ପୂର୍ବ କମ୍ୟୁନିଷ୍ଟ ଦେଶଗୁଡ଼ିକରେ ଦେହ ବେପାରର ଏମିତି ନାହିଁ ନଥିବା ବନ୍ୟା ଆଜି ଉତ୍ତାଳ, ଯାହାକୁ ହିମାଳୟ ଭଳି ଏତେ ଉଚ୍ଚ ବନ୍ଧ ମଧ୍ୟ ଅଟକାଇ ପାରିବ ନାହିଁ ।



Digitized by srujanika@gmail.com

କେବଳ ଜର୍ମାନରେ ହିଁ ଏ ଦେଶଗୁଡ଼ିକର ପ୍ରାୟ ୩୦ ହଜାର ସ୍ତ୍ରୀ ଉନ୍ନତ ଜୀବନର ପ୍ରଲୋଭନ ନେଇ ନିଜକୁ ପ୍ରକାଶ୍ୟରେ ନିଲାମ କରିବାରେ ଲାଗିଛନ୍ତି । ଏଠି ଏକଥା ଜାଣିରଖିବା ଉଚିତ ହେବ ଯେ ସଂପ୍ରତି ଜର୍ମାନୀରେ ବେଶ୍ୟାମାନଙ୍କ ମୋଟ ସଂଖ୍ୟା ଦୁଇ ଲକ୍ଷାଧିକ ବୋଲି ହିସାବ କରାଯାଇଛି ।

ସେହିପରି ମଧ୍ୟ ପ୍ରାଚ୍ୟର ମୁସଲିମ୍ ଦେଶଗୁଡ଼ିକର ଅବସ୍ଥା ମଧ୍ୟ ବ୍ୟତିକ୍ରମ ନୁହେଁ । ଏ ଦେଶଗୁଡ଼ିକରେ ମହିଳାମାନଙ୍କ ଉପରେ ଅତ୍ୟଧିକ ବିଧି ନିଷେଧ ଲାଗୁ କରାଯାଉଥିବା ବେଳକୁ ପୁରୁଷମାନଙ୍କୁ ମନଇଚ୍ଛା ଭୋଗବିଳାସର ଅଖଣ୍ଡ ସ୍ୱାଧୀନତା ଦିଆଯାଇଛି । ଏହା ଫଳରେ ପ୍ରାୟ ପ୍ରତି ସପ୍ତାହରେ ଚାର୍ଟଡ଼ ବିମାନ ବହୁ ସଂଖ୍ୟାରେ ଦଳ-ଦଳ ରୋମିୟ ଯୁବତୀଙ୍କୁ ନେଇ ଦୁବାଇର ଅନ୍ତର୍ଜାତୀୟ ବିମାନ ବନ୍ଦରରେ ଅବତରଣ କରୁଛି । ଏ ବିମାନ ସବୁ ଖାସ୍ ଏହି ଉଦ୍ଦେଶ୍ୟରେ ଭଡ଼ା ନିଆଯାଇଥାଏ । ଏହି ଯୁବତୀମାନେ ମାତ୍ର ୧୪ ଦିନର ଭିସା ନେଇ ଏଠାକୁ ଡଲାରର ଫସଲ ଅମଳ କରିବାକୁ ଆସିଥାନ୍ତି । ମାତ୍ର ଦୁଇ ସପ୍ତାହ ମଧ୍ୟରେ କଲର ଟି.ଭି., ବିଳାସିତାର ଅନ୍ୟାନ୍ୟ ବିବିଧ ମୂଲ୍ୟବାନ ସାମଗ୍ରୀ ସାଙ୍ଗକୁ ସୁଟକେଶ୍‌ରେ ତାଡ଼ା-ତାଡ଼ା ଡଲାର ଭର୍ତ୍ତିକରି ନିଜ ଘରକୁ ଫେରିଯାଆନ୍ତି । ମାତ୍ର ଦି'ଟା ସପ୍ତାହରେ ଏମାନଙ୍କ ରୋଜଗାର ଯାହା, ଜଣେ ପୁରୁଷ ସେଠି ଦିନରାତି ପରିଶ୍ରମ କରି ତିନି ମାସରେ ମଧ୍ୟ ସେତିକି ଅର୍ଥ ଉପାର୍ଜନ କରିପାରିବା କାଠିକର ପାଠ ।

ଇସ୍ରାଏଲର ମୁଖ୍ୟ ନଗରୀ ଟେଲ୍ – ଅଭିଭ୍‌ରେ ମଧ୍ୟ ଏ ଧନ୍ଦା ଜୋର୍‌ସୋର୍‌ରେ ଚାଲିଛି । ୧୯୮୮ରେ ସେଠି ୩୦ଟି ବେଶ୍ୟାଳୟ ଥିଲା ବେଳକୁ ୧୯୯୩ରେ ଅର୍ଥାତ ପାଞ୍ଚ ବର୍ଷ ମଧ୍ୟରେ ସେ ସଂଖ୍ୟା ୧୫୦କୁ ବୃଦ୍ଧି ପାଇଥିଲା । ହାରାହାରି ବେଶ୍ୟାଳୟର ବାର୍ଷିକ ଅଭିବୃଦ୍ଧି ହାର ୨୫ । ଅଧିକାଂଶ ସଂଖ୍ୟାରେ ରୁଷିୟମାନଙ୍କ ସେଠାରେ ପହଞ୍ଚିବାର ଏ ପରିଣାମ ।

ଏବେ ବି ନିଜକୁ ଗୋଟାଏ ବଡ଼ କମ୍ୟୁନିଷ୍ଟ ଦେଶ ବୋଲାଉଥିବା ଚୀନର ସବୁ ବଡ଼ ସହରରେ ଏମିତି ମଦିରାଳୟର ସଂଖ୍ୟା ଅତ୍ୟଂତ ବୃଦ୍ଧି ପାଇବାରେ ଲାଗିଛି । ଯେଉଁଠି ନୀଳନୟନା ରୁଷିୟ ବାଳା ସାକୀ ସାଜିଛନ୍ତି ଏବଂ ପ୍ରତ୍ୟେକ ମଦିରାଳୟ ପୃଷ୍ଠଭାଗରେ କିଛି କିଛି ଖାଲି କକ୍ଷ ଅବଶ୍ୟ ରହିଥାଏ, ଯାହାର ଉପଯୋଗିତା କାହାକୁ ଅଜଣା ନୁହେଁ ।

ଇଟାଲିର ମୋଦେନା ନଗରରେ ୧୯୯୨ରେ ବୁଲଗେରିଆ, ପୋଲେଣ୍ଡ, ରୋମାନିଆ ଆଦି ଦେଶରୁ ଏବଂ ପୂର୍ବ ଇଉରୋପର ଅନେକ ଅଂଚଳରୁ ଆସିଥିବା ଶତାଧିକ ଝିଅ ଗିରଫ ହୋଇଥିଲେ । ସେମାନେ ଏକ ସ୍ୱୟଂଭୂ ନାଟ୍ୟକର୍ମୀଦ୍ୱାରା ନର୍ତ୍ତକୀ ଭାବରେ ଅଣା ଯାଇଥିଲେ । ଇଟାଲିରେ ଗ୍ରାହକମାନଙ୍କ ସଂଗେ ଉତ୍ତମ ବ୍ୟବହାର କରିବା ଲାଗି ସେମାନଙ୍କୁ ଆଦେଶ ଦିଆଯାଇଥିଲା । ଏ ଆଦେଶ ପଛରେ ଥିଲା ପ୍ରଚ୍ଛନ୍ନ ଧମକ । ଏ ନାଟ୍ୟକର୍ମୀଙ୍କ ବିରୋଧରେ ମକଦମା ଚାଲିଛି ।



Digitized by srujanika@gmail.com

ଏ ଘୃଣ୍ୟ ବ୍ୟବସାୟର ଚେର ଏତେ ସୁଦୃଢ଼ ଯେ ଯୁଦ୍ଧ ସମୟରେ ଯେତେବେଳେ ଅସ୍ତ୍ରଶସ୍ତ୍ର ବ୍ୟାପାରକୁ ଛାଡ଼ି ସବୁ ଧନ୍ଦା ମାନ୍ଦା ପଡ଼ିଯାଏ; ସେତେବେଳେ ଏ ଧନ୍ଦାଟା ଆହୁରି ଜୋର୍‌ରେ ଆଗେଇ ଚାଲେ ।

ଆଧୁନିକ ସଭ୍ୟତା ଆଡ଼କୁ କ୍ଷିପ୍ର ଗତିରେ ଆଗେଇ ଚାଲିଥିବା ତୁର୍କୀର କୃଷ୍ଣସାଗରୀୟ ଅଞ୍ଚଳରେ ମଧ୍ୟ ଏ ଧନ୍ଦାରେ ଥିବା ଅପରିସୀମ ଅର୍ଥର ମୋହରେ ମହିଳାମାନଙ୍କର ଏ ଧନ୍ଦା ପ୍ରତି ଆଗ୍ରହ ବୃଦ୍ଧି ପାଇବାରେ ଲାଗିଛି । ଗତ ପାଞ୍ଚ ବର୍ଷ ମଧ୍ୟରେ ସେଠାରେ 'ତଲାକ'ର ହାର ପ୍ରାୟ ୨୫% ବୃଦ୍ଧି ପାଇଛି । ତା' ସାଙ୍ଗକୁ ସିଫିଲିସ୍, ଗନେରିଆ ଆଦି ଯୌନରୋଗର ପ୍ରକୋପ ମଧ୍ୟ ବୃଦ୍ଧି ପାଇବାରେ ଲାଗିଛି । ମୋଲଦୋଭା ଓ ବାଇଲୋରୁଷିଆରୁ ବହୁ ସଂଖ୍ୟକ ଯୁବତୀ 'ନତାଶା' ସେଠି ବ୍ୟବସାୟ କରିବା ଆଳରେ ଯାଇ ପହଞ୍ଚିଛନ୍ତି । ଏମାନେ ଦିନବେଳେ ସୁଟକେସ୍‌ରେ ବିଭିନ୍ନ ଶସ୍ତା ପ୍ରସାଧନ ସାମଗ୍ରୀ ଧରି ଫେରି କରନ୍ତି ଓ ରାତିରେ ନିଜର ଦେହ ବେପାର ଚଳାନ୍ତି । ଏହା ଫଳରେ ହୋପା ପରି ଛୋଟକାଟିଆ ବସ୍ତିରେ ଯେଉଁଠି ପାଞ୍ଚବର୍ଷ ତଳେ ଗୋଟାଏ ବି ହୋଟେଲ ନଥିଲା ସେଠି ଆଜି ଅର୍ଦ୍ଧଶତାଧିକ ହୋଟେଲ ମୁଣ୍ଡ ଟେକିଲାଣି । ହୋଟେଲରେ ମାତ୍ର ୧୫୦ ଡଲାର ବିନିମୟରେ ଯେ କୌଣସି ବ୍ୟକ୍ତି ଅନାୟାସରେ ଏ ନତାଶାମାନଙ୍କର 'ସେବା' ଉପଭୋଗ କରିପାରେ ।

## ଦେହ ବେପାରର ମାଫିଆ ଡନ୍

ସବୁଠୁ ବିସ୍ମୟର କଥା ଯେ ଏହି ସୁନ୍ଦରୀ ଝିଅମାନଙ୍କ ମଧ୍ୟରୁ ଅଧିକାଂଶ ଝିଅଙ୍କୁ ସାମ୍ନାର ଗୋଟାଏ-ଦିଟା ଦାନ୍ତ ନକଲୀ ହୋଇଥାଏ । ପଚାରିଲେ ସେମାନଙ୍କଠୁ ଗୋଟିଏ ଉତ୍ତର ମିଳେ— ପାହାଚରୁ ଖସିପଡ଼ିବା ଫଳରେ ଦାନ୍ତ ଭାଙ୍ଗିଗଲା । ତା'ହେଲେ କ'ଣ ବେଶ୍ୟାଳୟଗୁଡ଼ିକରେ ଅସୁରକ୍ଷିତ ପାହାଚ ନିର୍ମାଣର ପ୍ରଥା ରହିଛି ? ବା ଏମାନଙ୍କୁ ବାଟକୁ ଆଣିବା ଲାଗି ନିଯୁକ୍ତ ବର୍ବର ଗୁଣ୍ଡାମାନଙ୍କ ଘୁଷି ମାଡ଼ରେ ଏମାନେ ନିଜର ଅସଲ ଦାନ୍ତ ହରାଇ ବସିଛନ୍ତି ? ଏହା ନିଜର ପ୍ରକୃତ ପରିଚୟ ଲୁଚାଇବାର ଅପପ୍ରୟାସ ମାତ୍ର ।

ଯାହା ହେଉ ଏ ଧନ୍ଦାର ଦଲାଲମାନେ ଆହୁରି ମଧ୍ୟ ନାନା ପ୍ରଣାଳୀରେ ଝିଅମାନଙ୍କୁ ଦେହ ବେପାର ଲାଗି ବାଧ୍ୟତାମୂଳକ ଭାବେ ସମ୍ମତ କରାନ୍ତି । ପ୍ରଥମେ ସେମାନେ ବିଦେଶରେ ଭଲ ଅର୍ଥକରୀ ଚାକିରିର ପ୍ରଲୋଭନ ଦିଅନ୍ତି । ତା'ପରେ ନକଲି ପାସ୍‌ପୋର୍ଟ, ଭିସା ଓ ବିମାନ ଟିକେଟ୍ ପାଇଁ ସେମାନଙ୍କ ମା-ବାପାଙ୍କୁ ନିଜ ଘର ବନ୍ଧା ଦେବାଲାଗି ରାଜି କରାନ୍ତି ଏବଂ ସେମାନଙ୍କ ବିଶ୍ୱାସ ଭାଜନ ହେବାପାଇଁ ନିଜେ ବନ୍ଧା ରଖନ୍ତି ଏବଂ କହନ୍ତି ଯେ, କେଇ ମାସ ଝିଅର ବେତନରୁ କିଛି କିଛି କାଟି ଘର ଋଣମୁକ୍ତ କରି ସେମାନଙ୍କୁ ଫେରାଇ ଦେବେ । ଏଭଳି ଝିଅମାନେ ଯଦି ବିଦେଶକୁ ଯାଇ ବେଶ୍ୟାବୃତ୍ତି କରିବାକୁ ରାଜି ନ ହୁଅନ୍ତି ତେବେ ନକଲି ପାସପୋର୍ଟର ରହସ୍ୟ ପୋଲିସକୁ ଖବର କରି, ଘର ବିକ୍ରି କରିବାର ଧମକ ଦେଇ ସେମାନଙ୍କୁ କବଳିତ କରିଥାନ୍ତି ।



Digitized by srujanika@gmail.com

ଏ ଧଂନ୍ଦାର ମାଫିଆ ଡନ୍‌ମାନେ, ୧୯୮୫ରୁ ୧୯୯୧ ମଧ୍ୟରେ ନେଦରଲେଣ୍ଡ, ବେଲଜିୟମ ଓ ଜର୍ମାନରେ କରାଯାଇଥିବା ଏକ ହିସାବ ଅନୁସାରେ ଲାଟିନ୍ ଆମେରିକା ଓ ଏସିୟ ଦେଶଗୁଡ଼ିକର ଅନ୍ୟୂନ ତିନିହଜାର ମହିଳାଂକୁ ଏ ବ୍ୟାପାରର କଞ୍ଚାମାଲ୍‌ରେ ପରିଣତ କରିଛନ୍ତି ।

ମହିଳାମାନେ ତ ପରିଶେଷରେ ମହିଳା– ଯେଉଁମାନେ ଶତାବ୍ଦୀ ଶତାଂବ୍ଦୀ ଧରି ପୁରୁଷର ଭୋଗ ସାମଗ୍ରୀ ହେବା ପାଇଁ ଅଭିଶପ୍ତ । ହେଲେ ମାତ୍ରାଧିକ ଦାରିଦ୍ର୍ୟ ନାରୀମାନଙ୍କୁ ଓ ବିକୃତ ଯୌନ ରୁଚି ସଂପନ୍ନ କାମୁକତା ପୁରୁଷମାନଙ୍କୁ ଏ ଧନ୍ଦାରେ ଅବତୀର୍ଣ୍ଣ କରିଛି । ପେରିସ୍‌ର ଏକ ଯୌନ କେନ୍ଦ୍ର ରେଡ୍ କରିଥିବା ପୋଲିସର ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ, ଯେତେବେଳେ ସେମାନେ ଦେଖିଲେ ଯେ ଆପତ୍ତିଜନକ ଅବସ୍ଥାରେ ପ୍ରକାଶ୍ୟରେ ଧରାପଡ଼ିଥିବା ଝିଅମାନଙ୍କ ମଧ୍ୟରୁ ଅର୍ଦ୍ଧେକ ଥିଲେ ପୁରୁଷ ଯେଉଁମାନଙ୍କୁ ଶଲ୍ୟକ୍ରିୟା ମାଧ୍ୟମରେ ସ୍ତ୍ରୀବନ୍ଦ୍ କରି ଦିଆଯାଇଥିଲା ।

ଅନ୍ୟାନ୍ୟ ସବୁ କ୍ଷେତ୍ର ପରି ଯୌନବ୍ୟାପାର କ୍ଷେତ୍ରରେ ମଧ୍ୟ ଆମେରିକା ଅଗ୍ରଣୀ ହେବାପାଇଁ ଆପ୍ରାଣ ଉଦ୍ୟମ ଚଲାଇଛି । ହ୍ୟୁଷ୍ଟନ୍‌ରେ କୋରିଆର ମାଲିକାନାରେ ଥିବା ନିର୍ବସ୍ତ୍ର ଚିତ୍ରକଳା କେନ୍ଦ୍ର (Nude Modelling studios) ସ୍ଥାପିତ ହୋଇ ଚାଲିଛି । ସେଠି ଥିବା କୋରୀୟ ମଡେଲ ଝିଅମାନଙ୍କୁ ଦକ୍ଷିଣ କୋରିଆରେ ଥିବା ଆମେରିକାନ ସାମରିକ ଅଫିସରମାନଙ୍କୁ ଉତ୍କୋଚ ଦେଇ ମାଫିଆ ସର୍ଦ୍ଦାରମାନେ ଚାଲାଣ କରୁଛନ୍ତି । ଏମାନଙ୍କୁ ବଡ଼ ସହଜ ଉପାୟରେ ଆମେରିକା ଅଣାଯାଉଛି । ଜଣେ ଆମେରିକାନ୍ ନାଗରିକଙ୍କୁ ମିଛ ବାହା ହୋଇ ଆମେରିକା ଆସିବା ପାଇଁ ଏ ଝିଅମାନଙ୍କୁ ପାଞ୍ଚହଜାର ଡଲାର ଦିଆଯାଇଥାଏ । ଆମେରିକା ଆସିଲାପରେ ପୁଣି ପାଞ୍ଚହଜାର ଡଲାର ଦେଇ ସେମାନଙ୍କୁ 'ଡାଇଭୋର୍ସ' କରିବାକୁ କୁହାଯାଏ । ଏଭଳି ଆସିଥିବା ମହିଳାମାନେ ବେଶ୍ୟାଳୟର ଶୋଭାରେ ପରିଣତ ହୋଇଥାନ୍ତି । ସେମାନେ ଆଦୌ ଇଂରାଜୀ ଜାଣୁ ନଥିଲେ ମଧ୍ୟ ଏ ଧନ୍ଦାରେ ଭାଷାର ବା କାମ କ'ଣ ? ବିଭିନ୍ନ ରକମ ଭୟ ଓ ଶାରୀରିକ ଉତ୍ପୀଡ଼ନ ଦ୍ୱାରା ସେମାନଙ୍କୁ ବେଶ୍ୟାରେ ପରିଣତ କରାଯାଏ । ଆମେରିକାନ୍ ଯୁବକମାନେ ଏମାନଙ୍କ ପାଇଁ ଯେ କୌଣସି ମୂଲ୍ୟ ଦେବାଲାଗି ସବୁବେଳେ ତିଆର ଥାଆନ୍ତି । କାରଣ ବିକୃତ କାମଚେଷ୍ଟା ଲାଗି ଏ ଭୟାକ୍ରାଂନ୍ତ ସ୍ତ୍ରୀମାନଙ୍କ ଅପେକ୍ଷା ଅଧିକ ଉପଯୁକ୍ତ ପାତ୍ର ସେମାନେ କେଉଁଠୁ ପାଇବେ ?

ଲସ୍ ଏଂଜେଲ୍‌ସରେ ଏ ଧନ୍ଦା ରପ୍ତାନି ଅଭିମୁଖୀ ହୋଇଯାଇଛି । ଏଠାରୁ କକେଶିଆ ମୂଳର ଆମେରିକାନ ଯୁବତୀମାନଙ୍କୁ ଗୀତ, ନୃତ୍ୟ, ମଡେଲିଂର କଣ୍ଟ୍ରାକ୍ଟ ଦେଇ ଜାପାନକୁ ପଠାଯାଏ ଏବଂ ସେଠି ବେଶ୍ୟାବୃତ୍ତି କରିବାକୁ ସେମାନଙ୍କୁ ବାଧ୍ୟ କରାଯାଏ । ଏହା ମଧ୍ୟ ବୈଦେଶିକ ମୁଦ୍ରା ଅର୍ଜନର ଏକ ସମୁନ୍ନତ ମାଧ୍ୟମ ।



Digitized by srujanika@gmail.com

## ମୁକ୍ତ ଯୌନର ପ୍ରେତାତ୍ମା :

ଲସ ଏଞ୍ଜେଲସ୍‌ର ଜଣେ ଗୁପ୍ତଚର ଅଧିକାରୀଙ୍କ ଅନୁସାରେ ଏ ଧନ୍ଦା ଏକ ସୁସଂଗଠିତ କଳାବଜାରର ରୂପ ନେଇ ସାରିଛି । ସମୃଦ୍ଧି ସାଙ୍ଗକୁ ଜାପାନୀ ଯୁବକମାନଙ୍କ କାମଲିପ୍‌ସା ମଧ୍ୟ ଦ୍ରୁତ ଗତିରେ ବୃଦ୍ଧି ପାଇ ଚାଲିଛି । କେତେକ ନାଗରିକ ସଂଗଠନର ପ୍ରତିବାଦ ଫଳରେ ଥାଇଲେଣ୍ଡ ଓ ଫିଲିପାଇନ୍‌ସର ଯୁବତୀମାନଙ୍କ ଚାଲାଣ ଜାପାନକୁ ବନ୍ଦ ହୋଇଗଲା, ହେଲେ ଆଗରୁ ଯେଉଁମାନେ ପହଞ୍ଚି ସାରିଥିଲେ, ସେମାନଙ୍କ ଲାଗି ବିଶେଷ କିଛି କରାଯାଇପାରିଲା ନାହିଁ । ସେମାନଙ୍କ ମଧ୍ୟରୁ ଅଧିକାଂଶ ତଳଂତା ବୟସରେ ଯେମିତି ସେମିତି କରି ନିଜ ଧନ୍ଦା ଚଲାଇଛନ୍ତି । କୁଖ୍ୟାତ 'ଯାକୁଜା ଗୋଷ୍ଠୀ'ର ନିୟନ୍ତ୍ରଣରେ ଏମାନେ ଏବଂ ଏହି ଗୋଷ୍ଠୀ ଏମାନଙ୍କୁ ଯୌନଦାସୀ ଭାବେ ସୌଖୀନ ଯୁବକମାନଙ୍କୁ ପରିବେଷଣ କରି ଭଲ ରୋଜଗାର କରୁଛନ୍ତି । ଏ ଝିଅମାନଙ୍କୁ ୧୪,୦୦୦ ଡଲାର ମୂଲ୍ୟରେ ସେମାନଙ୍କ ଦେଶରେ କିଣା ଯାଇଥିଲା ବେଳେ, ସେମାନଙ୍କୁ ଜାପାନର ବାର୍ ଓ କ୍ଲବ୍‌ରେ ୩୦ ହଜାର ଡଲାର ମୂଲ୍ୟରେ ବିକା ଯାଉଛି ।

ଭିଏତନାମ ମଧ୍ୟ ଏ ବ୍ୟାପାରରୁ ମୁକ୍ତ ରହିପାରି ନାହିଁ । କେବଳ ହୋ-ଚି-ମିନ୍ ସିଟିରେ ଏମାନଙ୍କ ସଂଖ୍ୟା ଦେଖୁ ଦେଖୁ ୧୦ ହଜାରରୁ ୫୦ ହଜାରକୁ ବୃଦ୍ଧି ପାଇଲା ।

ମରକ୍‌କୋ ତ ବିଳାସୀ ସାଉଦି ଶେଖମାନଙ୍କ ସ୍ୱର୍ଗରେ ପରିଣତ ହୋଇଛି । ଚୀନରେ ୧୯୯୨ରେ ଏ ଧନ୍ଦାରେ ଲିପ୍ତ ୨,୪୦,୦୦୦ ଲୋକ ଗିରଫ ହୋଇଥିଲେ । ଯୌନଲିପ୍‌ସା ଆକ୍ରାନ୍ତ ଆରବ ଶେଖ ଉଚ୍ଚ-ରକ୍ତଚାପ ବା ଚର୍ମରୋଗ ପରି ସାଧାରଣ ରୋଗର ଚିକିତ୍ସା କରାଇବା ଆଳରେ ବମ୍ବେରେ ମାସେ-ପନ୍ଦର ଦିନ ରହିବା ଲାଗି ଯେମିତି ତୋଫାନ ପରି ମାଡ଼ି ଆସନ୍ତି । ଏମାନଙ୍କ ସୁବିଧା ଲାଗି ହସପିଟେଲ ଆଖପାଖରେ ଅନେକ ଅବୈଧ ବେଶ୍ୟାଳୟ ଆବାସିକ ଫ୍ଲାଟ୍‌ରେ ଛତୁ ଫୁଟିଲା ପରି ଫୁଟି ଚାଲିଛି । ସେଠାରେ ସେମାନେ ଶହେରୁ ହଜାରେ ଡଲାର ଖର୍ଚ୍ଚ କରି 'ହନିମୁନ୍ ରୁମ୍' ପରି ସଜ୍ଜିତ କକ୍ଷରେ ନିଜ ପସନ୍ଦର ଝିଅ ସହିତ ରାତ୍ରି ଯାପନ କରିପାରନ୍ତି ।

ଆଜି ମୁକ୍ତ ଯୌନର ଏ ପ୍ରେତ ଅସାଧ୍ୟ ଏଡ୍‌ସର ପ୍ରସାରରେ ଏକ ଭୟଙ୍କର ଭୂମିକା ଗ୍ରହଣ କରିଛି । କେଇ ବର୍ଷ ତଳେ ଆମେରିକାର ସମସ୍ତ ସମଲୈଙ୍ଗିକ ଛୁଟି ବିତାଇବାପାଇଁ ହାଇଟି ଯାଉଥିଲେ । ହେଲେ ସେଠି ଏଡ୍‌ସ ତା'ର ଭୟାବହ ରୂପ ଦେଖାଇଲା ପରେ ସେଠାକାର ରାଜନୈତିକ ଓ ସାମାଜିକ କର୍ମକର୍ତ୍ତାମାନେ ଏହାର ତୀବ୍ର ବିରୋଧ କରିବାକୁ ଆରମ୍ଭ କରି ଦେଲେ । ଯୌନ ପର୍ଯ୍ୟଟକମାନଙ୍କ ଯାତାୟାତ ଉପରେ ଖୁବ୍ କଷ୍ଟରେ କିଛିଟା ନିୟନ୍ତ୍ରଣ ଲାଗୁ ହେଲା । ହେଲେ ବିଶ୍ୱରେ ଏମିତି ଅନେକ ସ୍ଥାନ ଅଛି, ଯେଉଁଠି ଏ ଚେତନାର ସ୍ଫୁରଣ ହେବା ବାକି ।



Digitized by srujanika@gmail.com

ଭାରତର ମହାନଗରୀ ବମ୍ବେ ଏକ ଏଡ୍‌ସ ପ୍ରସାର କେନ୍ଦ୍ରରେ ପରିଣତ ହେବାରେ ଲାଗିଛି । କାରଣ ଖାଲି ସମୟରେ ଦୂର ଦୂରାନ୍ତରୁ ଲୋକେ ଏଠି ଚାଲିଥିବା ଘର ତୋଳା କାମରୁ ଅର୍ଥ ରୋଜଗାର କରିବାକୁ ଧାଇଁ ଆସିଥାନ୍ତି । ମନୋରଞ୍ଜନ ଲାଗି ସେମାନେ ଏଡ୍‌ସ ସଂକ୍ରମିତ ବେଶ୍ୟାଳୟକୁ ଯାଇ ଏ ରୋଗର ବୀଜାଣୁ ନେଇ ଆସନ୍ତି ଓ କେଇମାସ ପରେ ଘରକୁ ଫେରି ଏ ବୀଜାଣୁ ନିଜ ନିଜ ପତ୍ନୀଙ୍କୁ ଦିଅନ୍ତି । ବମ୍ବେର ଏକ-ତୃତୀୟାଂଶ ବେଶ୍ୟା ଏ ରୋଗରେ ସଂକ୍ରମିତ । ୧୯୮୬ରେ ଭାରତରେ ଏଡ୍‌ସ ରୋଗୀ ସଂଖ୍ୟା ମାତ୍ର ୬ ଜଣ ଥିଲାବେଳେ ଆଠବର୍ଷ ଭିତରେ ଏ ସଂଖ୍ୟା ଦଶ ଲକ୍ଷାଧିକ ହୋଇ ସାରିଲାଣି ।

## ସଫଳ ଚେଷ୍ଟାର ବିଫଳ ପ୍ରୟାସ

ଦେହ ବେପାର ବିରୋଧରେ ବିଶ୍ୱବ୍ୟାପୀ ରୋଷ-କ୍ଷୋଭ ଦେଖାଯାଉଛି । ପୋପ୍ ଜନ୍ ପଲ୍ ମଧ୍ୟ ଏହା ବିରୋଧରେ ଅନେକ କିଛି କହି ସାରିଲେଣି । ବିଭିନ୍ନ ପ୍ରଦେଶରେ କିଛି କିଛି ଆଇନ ମଧ୍ୟ କରାଯାଇଛି । ଏ ସବୁର କିଛି କିଛି ପ୍ରଭାବ ମଧ୍ୟ ପଡୁଛି । ମାନିଲା (ଫିଲି ପାଇନ୍‌ସ)ର ନଗରମୁଖ୍ୟ ଏ ଧନ୍ଦାକୁ ମୂଳରୁ ବିନଷ୍ଟ କରିବାର ଶପଥ ନେଇଛନ୍ତି । ତିନି ଶତାଧିକ ମଦିରାଳୟରେ ତାଲା ଝୁଲାଇ ଦିଆଯାଇଛି । କରାଚୀର କେତେକ ମାନବାଧିକାରବାଦୀ ଆଇନଜୀବୀ ଏହା ବିରୋଧରେ ସ୍ୱରୋତ୍ତଳନ କରୁଛନ୍ତି । ପ୍ରାୟ ଦୁଇ ଲକ୍ଷ ବାଙ୍ଗଲାଦେଶୀ ଯୁବତୀଙ୍କୁ ଅଣାଯାଇ ବେଶ୍ୟାବୃତ୍ତି ର କୁତ୍ସିତ ଧନ୍ଦାରେ ସେଠି ଲଗା ଯାଇଛି । ଇଉରୋପୀୟ ଯୌନ ଲିପ୍‌ସୁମାନଙ୍କ ସ୍ୱର୍ଗ ଶ୍ରୀଲଙ୍କାର କେଥୋଲିକ ପାଦ୍ରୀମାନେ ବିକ୍ଷୋଭ କରି ସରକାରକୁ ଏହା ବିରୋଧରେ ସକ୍ରିୟ ପଦକ୍ଷେପ ନେବା ପାଇଁ ବାଧ୍ୟ କରିଛନ୍ତି । ବହୁ ଦେଶର ପାର୍ଲିଆମେଣ୍ଟ ଏହା ବିରୋଧରେ କଠୋର ଆଇନ ପ୍ରଣୟନ କଲେଣି । ହେଲେ ତଥାପି ଏ ଧନ୍ଦାଟା ଏମିତି ଏକ ରକ୍ତ ବୀଜ, ଯାହାକୁ ଯେତେ ଚାପିବାରେ ଚେଷ୍ଟା ହେଉଛି, ସେ ସେତେ ବ୍ୟାପକ ହେଉଛି । ଏହାର ବର୍ବର ଖେଳୁଆଡ଼ମାନେ କିଶୋର ବୟସୀ ପିଲାମାନଙ୍କୁ ମଧ୍ୟ ବିକୃତ ଯୌନରୁଚି ସଂପନ୍ନ ନରପଶୁଙ୍କ ଆଗରେ ପରିବେଷଣ କରିବାକୁ ସଂକୋଚ କରୁନାହାନ୍ତି । ମସ୍କୋର ବିଶାଳ ବୋଲ୍‌ଶୋଇ ଥିଏଟର ସାମ୍ନାରେ ସାଶା ନାମକ ଜଣେ ବ୍ୟକ୍ତିର ଆଡ୍‌ଡା ରହିଛି, ଯିଏ ଅଳ୍ପବୟସ୍କ ପିଲାମାନଙ୍କୁ ଯୌନ ଦୁରୁପଯୋଗ ଲାଗି ସବୁବେଳେ ପ୍ରସ୍ତୁତ କରି ରଖିଥାଏ । ସେମାନଙ୍କୁ ଝିଅ ବେଶରେ ସଜାଇ ମନୋରଞ୍ଜନ ଲାଗି ଭଡ଼ାରେ ଦିଏ ଓ ସେମାନଙ୍କୁ ସାହାଯ୍ୟ କରୁଥିବାର ଗର୍ବରେ ଫୁଲି ଉଠେ । କେବଳ ମସ୍କୋରେ ଏବେ ସହସ୍ରାଧିକ ପିଲା ଦେହ ବ୍ୟାପାରରେ ଲିପ୍ତ । ରୁଷ, ପୂର୍ବ ଇଉରୋପ ସହିତ ତୃତୀୟ ବିଶ୍ୱ ରାଷ୍ଟ୍ରରେ ମଧ୍ୟ ବାଳ ବେଶ୍ୟାବୃତ୍ତି ମହାମାରୀ ପରି ବ୍ୟାପୁଛି । ଥାଇଲେଣ୍ଡରେ ବାଳବେଶ୍ୟା ସଂଖ୍ୟା ୮ ଲକ୍ଷ ହେଲାବେଳକୁ ଭାରତରେ ଏହା ୫ ଲକ୍ଷରୁ କମ୍ ହୋଇ ନାହିଁ । ଭିଏତନାମ, କାମ୍ବୋଡିଆ, ଲାଓସ, ଚୀନ, ଡୋମିନିଅନ୍ ରିପବ୍‌ଲିକ ଆଦିରେ ମଧ୍ୟ ଏ ରୋଗ ବ୍ୟାପିବାରେ ଲାଗିଛି । ଇଉରୋପ, ଆମେରିକା ଭଳି ସମୃଦ୍ଧ ଦେଶ ମଧ୍ୟ ଏଥିରୁ



Digitized by srujanika@gmail.com

ମୁକ୍ତ ନୁହେଁ । ବାପାମା'ଙ୍କ କଡ଼ା ଅନୁଶାସନ, ବିମାତା, ବିପିତାଙ୍କ ଶାରୀରିକ ବା ଯୌନ ଅତ୍ୟାଚାର ସହି ନ ପାରି ଘରୁ ପଳାଉଥିବା ପିଲାମାନେ ଯୌନ-ଦାଦାମାନଙ୍କ କବଳିତ ହୋଇଥାନ୍ତି ।

ବେଶ୍ୟାବୃତ୍ତି କେବଳ ସରକାରୀ ପ୍ରଚେଷ୍ଟା ଦ୍ୱାରା ବନ୍ଦ ହେବ ନାହିଁ, ଏଥିଲାଗି ଜନ ଜାଗରଣର ଏକାନ୍ତ ପ୍ରୟୋଜନ । ତେଣୁ ସେ ବୃତ୍ତିର ମାନବୀୟ ପକ୍ଷର ମାନବ ଓ ସମାଜ ତାତ୍ତ୍ୱିକ ବିଶ୍ଳେଷଣ ଓ ଅଧ୍ୟୟନ ବିନା ଏମିତି ଏକ ବୈଜ୍ଞାନିକ ଚେତନା ସୃଷ୍ଟି ହେବା ଅସଂଭବ । ତେଣୁ ଏହାର ଐତିହାସିକ ଅଧ୍ୟୟନ, ସୃଷ୍ଟି, ଭୂୟୋଦର୍ଶନ ହିଁ ଏଥିଲାଗି ଏକ ପ୍ରକୃଷ୍ଟ ନିରାକରଣ ପନ୍ଥା ଖୋଜି ପାଇବାରେ ସହାୟକ ହୋଇପାରିବ ।

**ବିଦ୍ରୋହୀ ଯଜ୍ଞ ହବିଷଧାରୀ ଅଗ୍ନିହୋତ୍ରୀମାନେ :**

ବେଶ୍ୟାବୃତ୍ତିର ଇତିହାସ ହେଉଛି ସଭ୍ୟତାର ଇତିହାସ । ପୃଥିବୀର ଆଦିକାଳରୁ ପୃଥିବୀର ଏହି ପ୍ରାଚୀନତମ ବ୍ୟବସାୟ, ଏହି ''ଅତ୍ୟାବଶ୍ୟକ ଅମଙ୍ଗଳ; ସାମାଜିକ କଳଙ୍କ, ଶୁଗ୍ମ ଗଳିରେ ବନ୍ଦୀ ଆହତ ଦେହ ଓ ପିପାସିତ ଆତ୍ମାର ପୂତୀଗଂଧମୟ ନାଳି ରହିଆସିଛି ।

ବେଶ୍ୟାବୃତ୍ତିର ଆରମ୍ଭ ସେହି ଦିନଠୁ ହେଲା, ଯେଉଁଦିନ ଲୋକକଥାର ଜଣେ ଆଦିମ ସ୍ତ୍ରୀ ଆଉ ଖଣ୍ଡେ ଅଧିକା ମାଂସ ଟୁକୁରା ଲାଗି ଇଚ୍ଛା ପ୍ରକାଶ କରିଥିଲା । ବିଶ୍ୱର ପ୍ରାଚୀନତମ ଦେହ ବେପାରର ଆବିର୍ଭାବ ବିଷୟରେ କୁହାଯାଇଥିବା ଏକଥା ସତ ହେଉ କି ନ ହେଉ ଅଧିକା ମାଂସ ଖଣ୍ଡେର କାମନାରେ ନୁହେଁ, ଭୋକିଲା ଅନ୍ତନାଡ଼ିକୁ ଶାନ୍ତି ଦେବାଲାଗି ଆରମ୍ଭ ହୋଇଥିଲା ଏ ଦେହ ବେପାର । ପେଟର ଭୋକ ଓ ପେଟତଳର ଭୋକ ନାରୀକୁ କରିଛି ନୀଳକଣ୍ଠୀ । ଏମାନେ ଏମିତି ଏକ 'ଜହର ମୋହରା' ଫୁଲର ଜଙ୍ଗଲ, ଯେଉଁମାନେ ଜୀବନ ସାରା ପୁରୁଷ ଦେହରୁ ଆଦିମ 'ବିଷ' ଉତାରି ଆସିଛନ୍ତି ।

ଯେଉଁଦିନ ଆଦିମ ଈଶ୍ୱର ନିଷିଦ୍ଧ ଫଳ ଭକ୍ଷଣ କରିବା ଲାଗି ଇଭ୍‌କୁ ବାରଣ କରିଥିଲେ, ସେହି ଦିନ ହିଁ ତା' ଭିତରେ ବିଦ୍ରୋହର ଅଗ୍ନିବୀଜ ବପନ ହୋଇଥିଲା । ବିଦ୍ରୋହିଣୀ ବିଧାତ୍ରୀ ଇଭ୍ ଯଦି ନିଷିଦ୍ଧ ଫଳକୁ ଭକ୍ଷଣ କରି ଓ ଆଦମଙ୍କୁ ଭକ୍ଷଣ କରାଇ ଈଶ୍ୱରଙ୍କ ବିରୋଧରେ ପ୍ରକାଶ୍ୟ ବିଦ୍ରୋହ କରି ନ ଥାନ୍ତେ, ତେବେ ଏ ସୃଷ୍ଟି ସମ୍ଭବ ହୋଇପାରି ନ ଥାନ୍ତା । ବିଦ୍ରୋହ ହିଁ ସୃଷ୍ଟିର ଆଧାର । ନାରୀ ହିଁ ଆଦ୍ୟ ବିଦ୍ରୋହୀ ସୃଜନ ଯଜ୍ଞର ହବିଷଧାରୀ ଅଗ୍ନିହୋତ୍ରୀ । ସେ ଚିରଦିନ ଆନ୍ତରିକ ଜ୍ୱଳନର ଦାବାଗ୍ନିରେ ଜଳି ପୃଥିବୀକୁ ଆଲୋକିତ କରିଆସିଛି । ସେ ଚାହିଁକି ଜାଳି ପୋଡ଼ି ନିଜକୁ ଅଙ୍ଗାର କରିଛି । ସେଇ ତା'ର ବନ୍ଧନ, ସେଇ ତା'ର ମହାମୁକ୍ତି ।

ପୃଥିବୀରେ ବେଶ୍ୟାର ସୃଷ୍ଟି ସେହି କାଳରୁ, ଯେତେବେଳେ ସଭ୍ୟତାର ବିଭିନ୍ନ ସୋପାନ ଅତିକ୍ରମ କରି କରି ମଣିଷ ସାମାଜିକ ଜୀବନ ସ୍ତରରେ ପହଞ୍ଚିଥିଲା । ପତି-ପତ୍ନୀ



Digitized by srujanika@gmail.com

ଭାବରେ ନୂତନ ପ୍ରସ୍ତର ଯୁଗର କୃଷି ସଭ୍ୟତାରେ ପରିବାର ଗଠନ କରି ବସବାସ କରିବାର ନିଷ୍ପତ୍ତି ନେଇଥିଲା । ହେଲେ ଏହି ପତି-ପତ୍ନୀ ପ୍ରଥାର ଭିତ୍ତି ଥିଲା ଅତ୍ୟନ୍ତ ଦୁର୍ବଳ । କାରଣ ଏ ପ୍ରଥାର ପ୍ରଚଳନ ପୂର୍ବରୁ ମାନବ ସମାଜ ଉନ୍ମୁକ୍ତ ଓ ଅବାଧ ଯୌନ ଆଚରଣରେ ଅଭ୍ୟସ୍ତ ହୋଇ ସାରିଥିଲା । ତେଣୁ ବିବାହ ପ୍ରଥାର ପ୍ରଚଳନ ପରେ ମଧ୍ୟ ଅନେକ କ୍ଷେତ୍ରରେ ସ୍ତ୍ରୀ ଓ ପୁରୁଷ କେବଳ ଜଣକ ପାଖରେ ବନ୍ଧା ହୋଇ ରହିବା କଥାକୁ ମାନସିକ ସ୍ତରରେ ଗ୍ରହଣ କରିପାରିଲେ ନାହିଁ । ଆଗର ସେଇ ଯୌନ ସ୍ୱଚ୍ଛନ୍ଦତାକୁ ଖୋଜିବାର ଅଭିପ୍ସା ହିଁ ବେଶ୍ୟାବୃତ୍ତିକୁ ଜନ୍ମ ଦେଲା । ସେଥିଲାଗି ସେ କାଳରୁ ହଜାର ହଜାର ବର୍ଷ ପରବର୍ତ୍ତୀ ସମୟ ପର୍ଯ୍ୟନ୍ତ ନାରୀ, ପୁରୁଷର ଯୁଦ୍ଧ ବିଗ୍ରହର କାରଣ ହୋଇ ରହିଲା । ତେଣୁ ଏମିତି ସ୍ତ୍ରୀକୁ 'ନଗରବଧୂ'ର ସମ୍ମାନ ଦେଇ, ତାକୁ ସାମୂହିକ ଭୋଗର ବସ୍ତୁ କରି ଦିଆଗଲା ଓ ଏ ଗଣ୍ଡଗୋଳର ସମାଧାନ ପନ୍ଥା ବାହାର କରି ଦିଆଗଲା ।

ପୌରାଣିକ, ବୌଦ୍ଧ, ଦୈବତ ସମାଜରେ ବେଶ୍ୟା ବା ଗଣିକାମାନେ ଥିଲେ କଳାତ୍ମକ ଆନନ୍ଦ ସୃଷ୍ଟିର ମାଧ୍ୟମ । ପରବର୍ତ୍ତୀ ସମୟରେ ଏହି କଳାତ୍ମକ ଆନନ୍ଦ ଦେହ ବିନିମୟ ପ୍ରକ୍ରିୟା ଦେଇ ଗତି କରି ଦେହ ବେପାରରେ ପହଞ୍ଚିଥିଲା ।

ସେତେବେଳେ ବେଶ୍ୟାମାନଙ୍କୁ ଚଉଷଠି କଳାରେ ପ୍ରବୀଣ ହେବାକୁ ପଡୁଥିଲା । ବାତ୍ସାୟନଙ୍କ 'କାମ-ସୂତ୍ର' ର 'ବିଦ୍ୟା ସମୁଦ୍ଦେଶ' ନାମକ ଦ୍ୱିତୀୟ ଅଧ୍ୟାୟରେ ଏହି ଚଉଷଠି କଳାର ବର୍ଣ୍ଣନା ଦେଖିବାକୁ ମିଳେ । ଏଥି ମଧ୍ୟରୁ ଚବିଶଟି କର୍ମାଶ୍ରୟୀ, କୋଡ଼ିଏଟି ଦ୍ୟୁତାଶ୍ରୟୀ ଓ ଅବଶିଷ୍ଟ ରତି ବ୍ୟାପାର ସହ ସଂବଦ୍ଧ ।

**ଚଉଷଠି କଳା :**

୧. ଗାୟନ, ୨. ବାଦନ, ୩. ନୃତ୍ୟ, ୪. ଚିତ୍ର ଲେଖନ, ୫. ବିଶେଷଚ୍ଛେଦ୍ୟ, (ଚିତ୍ରାଙ୍କନ), ୬. ତଣ୍ଡୁଳ କୁସୁମାବଳୀ ବିକାର (ଚାଉଳ ଗୁଣ୍ଡରେ ଝୋଟି, ଚିତା, ଅଳ୍ପନା, ମୁରୁଜ ଅଙ୍କନ), ୭. ପୁଷ୍ପାସ୍ତରଣ (ପୁଷ୍ପ ରଚନା), ୮. ରଞ୍ଜନ କଳା (ଦାନ୍ତ, ଲୁଗାପଟା, ଅଙ୍ଗରେ ରଙ୍ଗ ଲେପନ), ୯. ଗଣିଭୂମିକା କର୍ମ, ୧୦. ଶାୟନ ରଚନା (ଶେଜ ସଜାଇବା), ୧୧. ଉଦକ ବାଦ୍ୟ ବା ଜଳ ତରଙ୍ଗ ବାଦନ, ୧୨. ଉଦକାଘାତ ବା ଜଳକ୍ରୀଡ଼ା, ୧୩. ମିତ୍ର ଯୋଗ ବା ମନ୍ତ୍ର ଯନ୍ତ୍ର ବିଦ୍ୟା, ୧୪. ମାଲ୍ୟଥନ ବା ମାଳା ଗୁନ୍ଥିବା, ୧୫. କାପୀଡ଼ ଯୋଜନ ବା ଫୁଲ ଗୁନ୍ଥିବା, ୧୬. ନେପଥ୍ୟ ପ୍ରୟୋଗ ବା ଫେନ୍ସି ଡ୍ରେସ୍, ୧୭. କର୍ଣ୍ଣପତ୍ର ଭଙ୍ଗ (ଦାନ୍ତ, ଶଙ୍ଖ ଆଦିରେ ଦେଶ ରଚନା), ୧୮. ଗନ୍ଧଯୁକ୍ତ ବା ସୁଗନ୍ଧ ଲେପନବିଧି, ୧୯. ଭୂଷଣ ଯୋଜନ, ୨୦. ଇନ୍ଦ୍ରଜାଲ ବା ଭୋଜବାଜି ବିଦ୍ୟା, ୨୧. କୌଚମାର ବା କୁଚମାର ଋଷିଙ୍କ ନିର୍ଦ୍ଦେଶିତ ସୁଭଙ୍ଗ କରଣ, ୨୨. ହସ୍ତଲାଘବ ବା ହାତ ସଫେଇ ବିଦ୍ୟା, ୨୩. ଭୋଜନ ପାନକ (ପାକ ବିଦ୍ୟା), ୨୪. ସୂଚୀବାନ କର୍ମ ବା ସିଲେଇ, ୨୫. ସୂତ୍ର କ୍ରୀଡ଼ା, ୨୬.



Digitized by srujanika@gmail.com

ବୀଣା, ଡମ୍ବରୁ ବାଦନ, ୨୭. ପ୍ରହେଳିକା, ୨୮. ପ୍ରତିମାଳା ବା ଅନ୍ତ୍ୟାକ୍ଷରୀ, ୨୯. ଦୁର୍ବଚିକ ଯୋଗ ବା ପଦ୍ୟ ରଚନା ଯାହାର ଉଚ୍ଚାରଣ କଠିନ, ୩୦. ପୁସ୍ତକ ବାଚନ, ୩୧. ନାଟକ ଆଖ୍ୟାୟିକ ବା ନାଟକ ଦର୍ଶନ, ୩୨. କାବ୍ୟ ସମସ୍ୟା ପୂର୍ତ୍ତି, ୩୩. ବେତ୍ରବାନ ବା ବେତବୁଣା କର୍ମ, ୩୪. ତକ୍ଷକର୍ମ, ୩୫. ତକ୍ଷଣ ବା ବଢ଼େଇ କର୍ମ, ୩୬. ବାସ୍ତୁ ବିଦ୍ୟା, ୩୭. ରୂପ୍ୟ ରତ୍ନାଦି ପରୀକ୍ଷା, ୩୮. ଧାତୁବାଦ ବା ଧାତୁ ଶୋଧନ, ୩୯. ମଣିରାଗାକାର ଜ୍ଞାନ, ୪୦. ବୃକ୍ଷାୟୁର୍ବେଦ ଯୋଗ, ୪୧. ମେଷ-କୁକ୍‌ଟଳାବକ ଯୁଦ୍ଧ ବିଧି, ୪୨. ଶୁକସାରିକା ପ୍ରଳାପନ, ୪୩. ମର୍ଦ୍ଦନ କୌଶଳ, ୪୪. ଅକ୍ଷର-ମୁଷ୍ଟିକା କଥନ ବା ସାଂକେତିକା ଭାଷା, ୪୫. ମ୍ଲେଚ୍ଛିତ ବା ଗୂଢ଼ କଥାବାର୍ତ୍ତା, ୪୬. ଦେଶ-ଭାଷା ବିଜ୍ଞାନ, ୪୭. ପୁଷ୍ପ ଶକଟିକା, ୪୮. ନିମିତ୍ତ ଜ୍ଞାନ ବା ଶକୁନ ବିଚାର, ୪୯. ଯନ୍ତ୍ର ମାତ୍ରିକା ବା ଯନ୍ତ୍ର ଜ୍ଞାନ, ୫୦. ଧାରଣ ମାତ୍ରିକା (ଶୁଣିକି ଧାରଣ କରିବା), ୫୧. ସମପାଠ୍ୟ ବା ସହପାଠ, ୫୨. ମାନସୀ ବା ଆକୃତିରେ ଲିଖିତ ଶ୍ଳୋକପାଠ, ୫୩. କାବ୍ୟକ୍ରିୟା, ୫୪. ଅଭିଦ୍ୟାନ କୋଷ ବା ସ୍ମରଣ, ୫୫. ଛନ୍ଦୋଜ୍ଞାନ, ୫୬. କ୍ରିୟାକଳ୍ପ ବା ରଚନା ପ୍ରକ୍ରିୟା, ୫୭. ଛଳିତ ଯୋଗ ବା ଠକ ବିଦ୍ୟା, ୫୮. ବସ୍ତ୍ର ଗୋପନ, ୫୯. ଦ୍ୟୁତ ବିଶେଷ, ୬୦. ଆକର୍ଷ କ୍ରୀଡ଼ା, ୬୧. ବାଳ କୀଡ଼ନ, ୬୨. ବୈନୟିକୀ ବା ପଶୁମଣ କରିବା, ୬୩. ବୈଜୟିକୀ ବା ବିଜୟ ପ୍ରଦାନକାରୀ ବିଦ୍ୟା, ୬୪. ବ୍ୟାୟାମିକୀ (ବ୍ୟାୟାମ, ଶିକାର) ।

**'ହେ ଦେବ ! ସପତ୍ନୀଙ୍କଠାରୁ ରକ୍ଷାକର...' :**

ହେ ଦେବ । ଆମର ସପତ୍ନୀଙ୍କଠାରୁ ରକ୍ଷାକର... ଏହି ସୋମ ମାନବ ପ୍ରଜା ମଧ୍ୟରେ ଶ୍ୟେନ ପକ୍ଷୀ ପରି ବସନ୍ତି । ଯେମିତି ଉପପତ୍ନୀ ପାଖକୁ ଜଣେ ବ୍ୟଭିଚାରୀ ଯାଇଥାଏ, ଠିକ୍ ସେହି ପରି ସୋମ ମଧ୍ୟ ଯାଆନ୍ତି । ଋକ୍‌ବେଦର ଏହି ସୂକ୍ତ ଓ ମନ୍ତ୍ର ବୈଦିକ ଯୁଗରେ ବେଶ୍ୟାର ଉପସ୍ଥିତିକୁ ରେଖାୟିତ କରେ ।

ଋକ ବେଦରେ ଦାସଦାସୀମାନଙ୍କୁ ଦାନ ଓ ଉପହାର ସୂତ୍ରରେ ଦେବା କଥା ଦେଖିବାକୁ ମିଳେ । ବିଜିତ ଗୋଷ୍ଠୀ ପରାଜିତ ଗୋଷ୍ଠୀର ସ୍ତ୍ରୀମାନଙ୍କୁ ଦାସୀ କରି ରଖୁଥିଲା । ଏମାନଙ୍କୁ ଦାନ ଓ ଉପହାର ଦେବାରେ ବିନିଯୋଗ କରାଯାଉଥିଲା । ରାଜାମାନେ ନିଜ ପରିଜନ ଓ ପୁରୋହିତମାନଙ୍କୁ ଦାସୀଭରା ରଥ ଦାନ କରୁଥିଲେ । ରାଜା ତ୍ରସଦସ୍ୟୁ ସୌଭରୀଙ୍କୁ ପଚାଶଟି ଦାସୀ ପ୍ରଦାନ କରିଥିଲେ । ରାଜା ସ୍ୱନୟ ଭାବୟବ୍ୟଙ୍କ ବିବାହରେ ଋଷି କକ୍ଷିବାନ ଦାସୀପୂର୍ଣ୍ଣ ରଥ ପାଇଥିଲେ । ଏହି ଦାସୀମାନଙ୍କ ସଞ୍ଜ୍ଞା 'ବଧୂ' ଥିଲା । ସେମାନଙ୍କ ସହ ବୈବାହିକ ବନ୍ଧନରେ ଆବଦ୍ଧ ନ ହୋଇ ମଧ୍ୟ ପତିକର୍ମ କରାଯାଇ ପାରୁଥିଲା । ଅଧିକାଂଶ ଦାସୀ ଗୋଷ୍ଠୀ ବା ଗାଁର ଗଣସଂପଦ ବୋଲି ଗଣ୍ୟ ହେଉଥିଲେ । ଏମାନଙ୍କ ସହିତ ପ୍ରତ୍ୟେକ ବ୍ୟକ୍ତି ସମ୍ପର୍କ କରିପାରୁଥିଲା ।



Digitized by srujanika@gmail.com

ପରବର୍ତ୍ତୀ ସମୟରେ ଏହି ଦାସୀମାନେ ବୈଦିକ କାଳର ବେଶ୍ୟାରେ ପରିଣତ ହୋଇଥିଲେ । ଯେଉଁ ଝିଅମାନଙ୍କର କୌଣସି ଭାଇ ନଥିଲେ ସେମାନଙ୍କୁ ମଧ୍ୟ ପ୍ରାୟ ବେଶ୍ୟାରେ ପରିଣତ କରି ଦିଆଯାଉଥିଲା । ଏମାନଙ୍କୁ ବୈଦିକ ଭାଷାରେ– ଅତିତ୍ୱରୀ, ଅତିକଦ୍ୱରୀ, ଅପସ୍କଛରୀ ଆଦି କୁହାଯାଉଥିଲା ।

ସଂସ୍କୃତ ଭାଷାରେ ବେଶ୍ୟାର ଅନେକ ପର୍ଯ୍ୟାୟବାଚୀ ଶବ୍ଦ ରହିଛି: ଗଣିକା, ବାରସ୍ତ୍ରୀ, ବାରାଙ୍ଗଣା, ବାରାଙ୍ଗନା, ବାରବାଣି, ବାରବନିତା, ବାର ବିଳାସିନୀ, ବାରବଧୂ, ବର୍ବାଟି, କ୍ଷୁଦ୍ରା, ରୂପାଜୀବା, ଶାଳ ଭଞ୍ଜିକା, ଝର୍ଝରା, ଶୂଳା, ଭଣ୍ଡହାସିନୀ, ଲଞ୍ଜିକା, ବନ୍ଧୁରା, କୁମ୍ଭା, କୁମ୍ଭଦାସୀ, କାମରେଖା, ସାମାନ୍ୟା, ସାଧାରଣ୍ୟା, ପଣ୍ୟାଂଗନା, ପଣାଂଗନା, ଭୁଜିଷ୍ୟା, ଭୋଗ୍ୟା, ସ୍ୱରବୀଥିକା, ବୃଷଳୀ, କୁଳଟା, ପୁଂଶ୍ଚଳୀ, ଯୁଙ୍ଗୀ ଇତ୍ୟାଦି ।

ଯଜୁର୍ବେଦର ନରମେଧ ପ୍ରକରଣରେ ବିଭିନ୍ନ ଗୁଣ ବିଶିଷ୍ଟ ଯେଉଁ ୧୮୪ ପ୍ରକାର ନର-ନାରୀଙ୍କ ବଳି ଦେବା କଥା କୁହାଯାଇଛି, ସେଥିରେ 'ପୁଂଶ୍ଚଳୀ'' (ବ୍ୟଭିଚାରିଣୀ ସ୍ତ୍ରୀ-ଗଣିକା)ର ନାମ ମଧ୍ୟ ଉଲ୍ଲେଖ ରହିଛି । ଋକ୍‌ବେଦର 'ସାଧାରଣ୍ୟା' ଯଜୁର୍ବେଦ କାଳ ଯାଏଁ ଆସୁ ଆସୁ 'ପୁଂଶ୍ଚଳୀ', ଗଣିକା, ବ୍ୟଭିଚାରିଣୀରେ ପରିଣତ ହୋଇ ଯାଇଥିଲା ।

ବ୍ରହ୍ମ ବୈବର୍ତ୍ତ ପୁରାଣ, ପ୍ରକୃତି ଖଣ୍ଡର ୧୮ଶ ଅଧ୍ୟାୟରେ ଏକ ପୁରୁଷଗାମିନୀକୁ ପତ୍ନୀ, ଦୁଇ ପୁରୁଷଗାମିନୀକୁ କୁଳଟା, ତିନି ପୁରୁଷଗାମିନୀକୁ ବୃଷଳୀ, ଚାରି ପୁରୁଷଗାମିନୀକୁ ପୁଂଶ୍ଚଳୀ, ପାଞ୍ଚରୁ ଛ' ପୁରୁଷ ଗାମିନୀକୁ ବେଶ୍ୟା, ସାତରୁ ଆଠ ପୁରୁଷଗାମିନୀକୁ ଯୁଙ୍ଗୀ ଓ ଏଥିରୁ ଅଧିକ ପୁରୁଷଗାମିନୀକୁ ମହାବେଶ୍ୟା ବୋଲି ଉଲ୍ଲେଖ କରାଯାଇଛି ।

ମହାଭାରତରେ ମଧ୍ୟ ବେଦଭଳି ବେଶ୍ୟାମାନଙ୍କ ଶ୍ରେଣୀ ବିଭାଜନ ଦେଖିବାକୁ ମିଳେ:

୧. ରାଜ ବେଶ୍ୟା
୨. ନଗର ବେଶ୍ୟା
୩. ଗୁପ୍ତ ବେଶ୍ୟା (ଆଜିର କଲ୍‌ଗାର୍ଲ ପରି)
୪. ଦେବ ବେଶ୍ୟା (ଦେବଦାସୀ)
୫. ବ୍ରହ୍ମ ବେଶ୍ୟା (ତୀର୍ଥସ୍ଥଳମାନଙ୍କରେ ରହୁଥିବା)

**ବୈଶ୍ୟା ବନାମ ବେଶ୍ୟା :**

ବେଶ୍ୟାବୃତ୍ତି ସହିତ ଅର୍ଥାତ 'କାମ'ର ସହିତ 'ଅର୍ଥ'ର ସଂଯୋଗ ମହାଭାରତ କାଳରୁ ବୋଲି ଦେଖିବାକୁ ମିଳେ । ମହାଭାରତ ଆଦି ପର୍ବରେ ଥିବା ଜନ୍ମାନ୍ଧ ମହର୍ଷି ଦୀର୍ଘତମା ପ୍ରସଙ୍ଗରୁ ଏ ବିଷୟରେ ଅନେକ କଥା ଜଣାପଡ଼େ ।

ଦୀର୍ଘତମାଙ୍କ ପତ୍ନୀ ପ୍ରଦ୍ୱେଷି ଥିଲେ ଅତ୍ୟନ୍ତ ରୂପବତୀ । ଦୀର୍ଘତମା ସ୍ୱଭାବତଃ ଥିଲେ ମହାକାମୀ । ତାଙ୍କର ଅନେକ ସନ୍ତାନସନ୍ତତି ଥିଲେ । ମହର୍ଷିଙ୍କ ପାଖରେ ସେମାନଙ୍କ



Digitized by srujanika@gmail.com

ଲାଳନପାଳନର ସାମର୍ଥ୍ୟ ନ ଥିଲା । ଏଥିରେ ରୁଷ୍ଟ ହୋଇ ପ୍ରଦ୍ୱଷି ଦିନେ ଋଷିଙ୍କ ଘୋର ଅପମାନ କଲେ ଏବଂ ସେ ତାଙ୍କ ସଙ୍ଗେ ଜୀବନ କାଟିପାରିବେ ନାହିଁ ବୋଲି ଜଣାଇଦେଲେ ।

ଏ ଘଟଣାରେ ଦୀର୍ଘତମା ଅତ୍ୟନ୍ତ କ୍ରୋଧାନ୍ୱିତ ହୋଇ ପ୍ରଦ୍ୱଷିଙ୍କୁ ଉଚିତ ଶିକ୍ଷା ଦେବା ନିମନ୍ତେ ମୂଳ ସମାଜ ବ୍ୟବସ୍ଥାକୁ ପରିବର୍ତ୍ତନ କରିବାକୁ ଶପଥ ନେଲେ ଏବଂ ସଙ୍ଗେ ସଙ୍ଗେ ତିନୋଟି ନିୟମ ପ୍ରଣୟନ କରିଦେଲେ ଯେ:

୧. ପତି ଅନ୍ଧ, ନିକମା କି ପଙ୍ଗୁ ଯାହା ହୋଇଥାଉ ପଛକେ ପତ୍ନୀ ତା' ସହିତ ଆଜୀବନ ରହିବାକୁ ବାଧ୍ୟ । ମୃତ୍ୟୁପରେ ମଧ୍ୟ ସ୍ୱାମୀର ବିଧବା ବୋଲାଇବାକୁ ବାଧ୍ୟ ।

୨. ଯଦି କୌଣସି କୁମାରୀ ଝିଅ ବା ବିବାହିତା ସ୍ତ୍ରୀ ସ୍ୱେଚ୍ଛାରେ ପରପୁରୁଷ ସହିତ ସଂଭୋଗ କରେ, ତାକୁ ଜାତିଭ୍ରଷ୍ଟ ଓ ପତିତା ବୋଲି ଗ୍ରହଣ କରାଯିବ ।

୩. ଯଦି ଏଭଳି ସ୍ୱଚ୍ଛନ୍ଦ ଯୌନାଚାରିଣୀ ଅପରାଧୀ ଜାତିଭ୍ରଷ୍ଟ ପତିତା ସ୍ତ୍ରୀ ପୁଣି କୌଣସି ପୁରୁଷ ସଙ୍ଗେ ରମଣ କରେ, ତେବେ ଏଥିଲାଗି ରମଣର ମୂଲ୍ୟ ବା 'ଭୋଗ ଶୁଳ୍କ' ଦେବାକୁ ପଡ଼ିବ ।

ବସ୍ତୁତଃ ଏହି ତୃତୀୟ ନିୟମଟି ହିଁ ଥିଲା ଦେହ-ବେପାରର ମୂଳରୂପର ଆବିଷ୍କାର । ଏହି ପରମ୍ପରା ତାକୁ ପଣ୍ୟାଙ୍ଗନା ହେବାର ଅବସର ଦେଲା ବ୍ୟବସ୍ଥା ନାମରେ ।

ଦୀର୍ଘତମାଙ୍କ ନିୟମରୁ ଏକଥା ମଧ୍ୟ ପ୍ରମାଣିତ ହୁଏ ଯେ ସେତେବେଳ ଯାଏଁ ସମାଜରେ ଆଦିମ ସାମ୍ୟବାଦୀ ସିଦ୍ଧାନ୍ତ ଓ ମୁକ୍ତ ଯୌନାଚାରର ପ୍ରଚଳନ ରହିଥିଲା । ବିବାହ ସେତେବେଳେ ଯୌନାଚାରରେ ପ୍ରତିବନ୍ଧକ ନ ଥିଲା । ବିବାହ ଥିଲା ସାମାଜିକ ଏକକ ବା ପରିବାର ସଙ୍ଗଠନ ନିମନ୍ତେ ଅଭିପ୍ରେତ ।

ସେତେବେଳେ 'ବସ୍ତି' ବା 'ବିଶ'ରେ ରହୁଥିବା ପୁରୁଷ ସମାଜକୁ ବୈଶ୍ୟ ଓ ନାରୀ ସମାଜକୁ ବୈଶ୍ୟା ବୋଲି କୁହା ଯାଉଥିଲା । ଜନସାଧାରଣଙ୍କ ସ୍ତ୍ରୀ ଥିଲା ସର୍ବଭୋଗ୍ୟା । ବୈଶ୍ୟା ଥିଲା ଜନସାଧାରଣଙ୍କ ସ୍ତ୍ରୀ । ବୈଶ୍ୟାମାନଙ୍କ ସଙ୍ଗେ ସହବାସର ନିୟମ ଥିଲା ସାମାଜିକ ପରମ୍ପରାର ଅନୁକୂଳ । ଏଥିଲାଗି କୌଣସି ଶୁଳ୍କ ଦେବାକୁ ପଡୁ ନଥିଲା । ହେଲେ ଦୀର୍ଘତମାଙ୍କ ନିୟମ ଅନୁସାରେ ଭ୍ରଷ୍ଟା ବା ପତିତା ସ୍ତ୍ରୀ ମଧ୍ୟ ସର୍ବଭୋଗ୍ୟା ଥିଲା । କିନ୍ତୁ ସହବାସ ଲାଗି ତାକୁ ଭୋଗ ଶୁଳ୍କ ଦେବାକୁ ପଡୁଥିଲା ଏବଂ ସେମାନଙ୍କୁ ବେଶ୍ୟା ବୋଲି କୁହାଯାଉଥିଲା । ବେଶ୍ୟାଗମନର ପ୍ରଥମ ସର୍ତ୍ତ ଥିଲା ଅର୍ଥ ବା ଭୋଗ ଶୁଳ୍କ । ବୈଶ୍ୟା ଓ ବେଶ୍ୟା ଥିଲେ ସାଧାରଣ ଓ ସର୍ବଭୋଗ୍ୟା ସ୍ତ୍ରୀ । ଯେ କୌଣସି ବର୍ଣ୍ଣର ସ୍ତ୍ରୀ ତାକୁ ଉପଭୋଗ କରିପାରୁଥିଲା କିନ୍ତୁ ବ୍ରାହ୍ମଣୀ ଓ କ୍ଷତ୍ରିୟାମାନେ ଥିଲେ ବିଶେଷ ଶ୍ରେଣୀର ସ୍ତ୍ରୀ ।



Digitized by srujanika@gmail.com

## ଧର୍ମ ଓ ବେଶ୍ୟାବୃତ୍ତି :

'ଅର୍ଥ' ଓ 'କାମ' ଭଳି 'ଧର୍ମ' ଓ 'କାମ' ଭିତରେ ମଧ୍ୟ ଗଭୀର ସଂପର୍କ ଦେଖିବାକୁ ମିଳେ । ଆଦିମ ସମାଜରେ କାମାଚାର ମଧ୍ୟ ଗୋଟାଏ ସ୍ତରରେ ଧର୍ମ ହିଁ ରହିଥିଲା । ପରବର୍ତ୍ତୀ ସମୟରେ ଯେତେବେଳେ ବହୁ ଆଡ଼ମ୍ବର ସହକାରେ ଧର୍ମ ଏକ ସଂପୂର୍ଣ୍ଣ ଭିନ୍ନ ସଂଗଠନ ଓ ସଂସ୍ଥା ଭାବରେ ବିକାଶ ଲାଭ କଲା, ସେତେବେଳେ ଏହି 'କାମ' ତା'ର ଏକ ବିଶେଷ ଉପକରଣ ଭାବରେ ପରିଦୃଶ୍ୟ ହୋଇଥିବା କଥା ଦେଖିବାକୁ ମିଳେ । ଧର୍ମ ସହିତ ଯୌନାଚାରର ଯେଉଁ ଅନେକ ସ୍ୱରୂପ ଦେଖିବାକୁ ମିଳେ, ସେଥିମଧ୍ୟରେ ମନ୍ଦିରମାନଙ୍କରେ ଚିତ୍ରିତ ଉଦ୍ଧତ କାମାଚାର, ମୂର୍ତ୍ତିକଳା ସେଥିମଧ୍ୟରୁ ଅନ୍ୟତମ ।

ବେବିଲୋନ୍, ଫିନିସିୟା, ଆସିରିଆ, କ୍ରୀଟ୍ ଆଦିର ପ୍ରାଚୀନ ସଭ୍ୟତାରେ କୁମାରୀ ଝିଅମାନେ ବର ପାଇବା ଲାଗି ଦେବୀ ମନ୍ଦିରରେ ବେଶ୍ୟାବୃତ୍ତି କରୁଥିଲେ । ଏହା ଥିଲା ସେମାନଙ୍କର ଏକ ଧାର୍ମିକ କୃତ୍ୟ । ପ୍ରାଚୀନ ନଗରୀ ଉର୍ ର ଦେବୀ ମନ୍ଦିରରେ ପ୍ରତିବର୍ଷ ଏମିତି ଏକ ପର୍ବ ପାଳନ କରାଯାଉଥିଲା, ଯେଉଁଠି ନଗରୀର ସମସ୍ତ ବିବାହିତା ସ୍ତ୍ରୀ ବେଶ୍ୟବୃତ୍ତିର ପବିତ୍ର ଧାର୍ମିକ କୃତ୍ୟରେ ଲିପ୍ତ ହେଉଥିଲେ ।

ଧର୍ମଭିତ୍ତିକ ଦେବଦାସୀ ପ୍ରଥା ପ୍ରାଚୀନ କାଳରେ ଭାରତ ସମେତ ସମଗ୍ର ବିଶ୍ୱରେ ରହିଥିଲା । ଭାରତରେ ଏହା ଏବେ ବି ରହିଛି । ଦେବତା ନାମରେ ଉତ୍ସର୍ଗିକୃତ ଏହି ଝିଅ, ସ୍ତ୍ରୀମାନଙ୍କୁ କୌଣସି ନା କୌଣସି ପ୍ରକାରେ ବେଶ୍ୟା ଭାବରେ ଉପଯୋଗ କରାଯାଉଥିଲା । କୋରିଂଥ୍‌ର ଦେବୀ ଏଫ୍ରୋଡାଇସଙ୍କ ମନ୍ଦିରରେ ବହୁ ସଂଖ୍ୟକ ଦେବଦାସୀ ଥିଲେ । ବିଦେଶୀ ନାବିକମାନଙ୍କର କାମବାସନା ପୂର୍ତ୍ତି ଓ ଅର୍ଥାଗମ ସେମାନଙ୍କ ମୁଖ୍ୟ କର୍ତ୍ତବ୍ୟ ଥିଲା ।

ବେବିଲୋନ୍ ଆଦି ପ୍ରାଚୀନ ସଭ୍ୟତାରେ 'ରାଷ୍ଟ୍ର'ର ସମାନ୍ତରାଳ ଭାବରେ ଅନେକତ୍ର 'ଧର୍ମରାଜ୍ୟ' ପ୍ରତିଷ୍ଠିତ ହୋଇଥିଲା । ଏହି 'ଧର୍ମରାଜ୍ୟ'ମାନ ଆର୍ଥିକ ଭାବରେ 'ରାଷ୍ଟ୍ର' ଅପେକ୍ଷା ଅଧିକ ସମୃଦ୍ଧ ଓ ସଂପନ୍ନ ଥିଲେ । ଧାର୍ମିକ ସଂଗଠନ ପକ୍ଷରୁ ଧର୍ମ ନାମରେ ସ୍ୱଚ୍ଛନ୍ଦ କାମାଚାର ମାଧ୍ୟମରେ ବିଦେଶୀ ସ୍ରୋତରୁ ଅପାର ଧନଲାଭ କରିବା ଥିଲା ଏ ସମୃଦ୍ଧିର ମୂଳ ଚାବିକାଠି । ଇସ୍ତର ଦେବୀଙ୍କ ମନ୍ଦିର ପ୍ରମୁଖ ଉପାସିକା ଦେବଦାସୀମାନଙ୍କ ଧାର୍ମିକ ବେଶ୍ୟାବୃତ୍ତି ପରମ୍ପରା ଯୋଗୁଁ ଏତେ ବିତ୍ତଶାଳୀ ଓ କ୍ଷମତାଶାଳୀ ଥିଲା ଯେ ରାଜା ଦେବଦାସୀମାନଙ୍କ ଆଜ୍ଞାକୁ ଦେବୀଙ୍କ ଆଜ୍ଞା ବୋଲି ଆଦର କରୁଥିଲେ । ହେଲେ ଭାରତରେ ଦେବଦାସୀ, ମାହାରୀମାନେ ସେତେ ସମୃଦ୍ଧ ନଥିଲେ । ମୌର୍ଯ୍ୟକାଳରେ ବିଗତ ଯୌବନା ବେଶ୍ୟାମାନଙ୍କ ଭଳି ଦେବଦାସୀମାନଙ୍କୁ ମଧ୍ୟ ବୃଦ୍ଧାବସ୍ଥାରେ ସୂତାକାଟି ପେଟ ପୋଷିବାକୁ ପଡୁଥିଲା ।

ମହର୍ଷି ଦୀର୍ଘତମା ପତ୍ନୀ ଉପରେ ପତିର ଯୌନ ଏକାଧିପତ୍ୟ ଲାଗି ସ୍ତ୍ରୀର ମୁକ୍ତଯୌନାଚାରକୁ ନିଷିଦ୍ଧ କରି, ଜାତିଭ୍ରଷ୍ଟ ପରପୁରୁଷଗାମିନୀ ପତିତାମାନଙ୍କ ନିମନ୍ତେ ଭରଣ



Digitized by srujanika@gmail.com

ପୋଷଣ ନିମନ୍ତେ ଭୋଗ-ଶୁଳ୍କର ବ୍ୟବସ୍ଥା ପ୍ରଣୟନ କରିଥିଲେ । ଏହାର ବହୁ ଶତାବ୍ଦୀ ପରେ ଏଥେନ୍ସ ନଗରରାଜ୍ୟ ଲାଗି ରାଜା ହୋରେସ୍ ମଧ୍ୟ ବେଶ୍ୟାବୃତ୍ତି ସପକ୍ଷରେ ମତ ଦେଇଥିଲେ ।

ପ୍ରାଚ୍ୟର କୁଳୀନ, ସଂଭ୍ରାନ୍ତ ସମାଜ, ଯେଉଁ ସାମାଜିକ କାରଣ ଯୋଗୁଁ ବେଶ୍ୟାବୃତ୍ତି ସ୍ଥାପିତ ହୋଇଥିଲା, ତା'ର ଶତାବ୍ଦୀ-ଶତାବ୍ଦୀ ପରେ ପାଶ୍ଚାତ୍ୟର କୁଳୀନ ସମାଜ ସେହି କାରଣରୁ ହିଁ ବେଶ୍ୟାବୃତ୍ତିକୁ ସମ୍ମତି ଦେଇଥିଲା । ସେ କାରଣ ଥିଲା– ମୁକ୍ତ ଯୌନାଚାରରୁ କୁଳବଧୂମାନଙ୍କ ସୁରକ୍ଷା । ବେଶ୍ୟାମାନଙ୍କ ଭରଣପୋଷଣ ନିମନ୍ତେ ଅର୍ଥର ବ୍ୟବସ୍ଥା ।

ପ୍ରାଚୀନ କାଳରେ ବେଶ୍ୟାମାନଙ୍କୁ ସ୍ୱତନ୍ତ୍ର ଧରଣର ପୋଷାକ ପିନ୍ଧିବାକୁ ପଡୁଥିଲା ବା ବିଶେଷ ଚିହ୍ନ ଧାରଣ କରିବାକୁ ପଡୁଥିଲା, ଯାହା ଫଳରେ ସେମାନେ କୁଳବଧୂଙ୍କ ଠାରୁ ଅଲଗା ବାରି ହୋଇପଡୁଥିଲେ ସହଜରେ ।

**ଦେବଦାସୀ ପ୍ରଥା :**

ଭାରତର ମନ୍ଦିରମାନଙ୍କରେ ନୃତ୍ୟ ଓ ନର୍ତ୍ତକୀ ପ୍ରଥାର ପ୍ରାଚୀନ ପରମ୍ପରା ରହିଛି । ଦେବଦାସୀ ପ୍ରଥା ସେ ଭିତରେ ଅନ୍ୟତମ । ଏହି ଦେବଦାସୀ ପ୍ରଥା ବୈଦିକୋତ୍ତର କାଳରୁ ସୃଷ୍ଟି ହୋଇଥିବାର ପ୍ରମାଣ ମିଳେ । ଏମାନଙ୍କୁ ବିଭିନ୍ନ ଦେବଦେବୀ ମନ୍ଦିରରେ ଦେବତାଙ୍କ ନାମରେ ଉତ୍ସର୍ଗ କରି ଦିଆଯାଇଥାଏ ।

ଦେବଦାସୀମାନଙ୍କର ବିଭିନ୍ନ ଶ୍ରେଣୀ ରହିଛି – ଦତ୍ତା, ବିକ୍ରିତା, ଭକ୍ତା, ହୃତା ଓ ଅଳଂକାରା । ଏହି ନାମରୁ ମଧ୍ୟ କୁମାରୀ ଝିଅମାନଙ୍କୁ ଦାନ କରିବା, ବିକ୍ରୟ କରିବା, ସ୍ୱତଃ ପ୍ରଣୋଦିତ ହୋଇ ଭକ୍ତ ସାଜିବା, ଅପହରଣ କରି ଦେବଦାସୀରେ ପରିଣତ କରିବାର ଆଭାସ ମିଳିଥାଏ । ଅଳଂକାରାମାନେ ହେଉଛନ୍ତି ସର୍ବୋଚ୍ଚ ଶ୍ରେଣୀର ଦେବଦାସୀ । ଏହି ଅଳଂକାରାମାନେ ନୃତ୍ୟ ଓ ତାନ୍ତ୍ରିକ ଯୋଗ ନିପୁଣା ହୋଇଥାନ୍ତି । ଏମାନଙ୍କୁ ଭୈରବୀ ବୋଲି ମଧ୍ୟ କୁହାଯାଇଥାଏ ।

ପ୍ରାଚୀନ କାଳରେ ବେଶ୍ୟାମାନଙ୍କୁ ସମାଜର ଗୌରବ ଓ ଭୂଷଣ ବୋଲି ମନେ କରାଯାଉଥିଲା । ବ୍ରାହ୍ମଣମାନେ ସେମାନଙ୍କୁ ଏକ ଏମିତି ମୋହିନୀ ଭାବରେ ଚିତ୍ରଣ କରୁଥିଲେ, ଯେଉଁମାନେ ନିଜର ବିଳାସପୂର୍ଣ୍ଣ ଆମୋଦ ଦ୍ୱାରା ରହସ୍ୟମୟ ଇନ୍ଦ୍ରିୟ ସୁଖାନନ୍ଦ ବୃଦ୍ଧି କରିବାରେ ଥିଲେ ସୁଦକ୍ଷା । ଯେତେବେଳେ ସେମାନଙ୍କ ରୂପ, ଯୌବନ ଅତିକ୍ରାନ୍ତ ହେଉଥିଲା, ସେତେବେଳେ ସେମାନେ ନିଜ ଚାତୁରୀ ଦ୍ୱାରା ହିଁ ଅର୍ଥାଗମ କରି ଜୀବନ ଅତିବାହିତ କରୁଥିଲେ ।



Digitized by srujanika@gmail.com

ପୌରାଣିକ କାଳରେ ନାରୀର ଏଇଟା ମଧ୍ୟ ଏକ ରୂପ ଥିଲା । ନାରୀର କମନୀୟ କାୟା ବନିମୟରେ ଯେକୌଣସି ଶୁଳ୍କ ନିଆଯାଇ ପାରୁଥିଲା । ଏହି ପୁରାଣ ରଚନାକାଳ ଖ୍ରୀଷ୍ଟପୂର୍ବ ୮୦୦ ବର୍ଷ ବୋଲି ବିଶେଷଜ୍ଞମାନଙ୍କର ମତ । ଯଯାତି କନ୍ୟା ମାଧବୀ ନିଜର ଦେହ ଶୁଳ୍କ ବିନିମୟରେ ଆଠଶତ ଶ୍ୟାମକର୍ଣ୍ଣ ଅଶ୍ୱ ସଂଗ୍ରହ କରି ବିଶ୍ୱାମିତ୍ରଙ୍କୁ ଗୁରୁଦକ୍ଷିଣା ଦେବା ନିମନ୍ତେ ଗାଲବଙ୍କୁ ପ୍ରଦାନ କରିଥିଲେ । ରାଜା ରୋମପାଦଙ୍କ ରାଜ୍ୟରେ ସେତେବେଳେ ଯାଇ ବର୍ଷା ହେଲା, ଯେତେବେଳେ ଜରତା ବେଶ୍ୟାର ନେତୃତ୍ୱରେ ଅନ୍ୟ ବେଶ୍ୟାମାନେ ମହାତପା ଋଷ୍ୟଶୃଙ୍ଗଙ୍କୁ ବିମୋହିତ କରି ଆଣିବାରେ ସଫଳ ହୋଇଥିଲେ । ବିଭିନ୍ନ ସମୟରେ ଦେବରାଜ ଇନ୍ଦ୍ର ତପସ୍ୱୀମାନଙ୍କ ତପୋଭଂଗ ଲାଗି ସ୍ୱର୍ଗର ଅଢ଼େଇ କୋଟି ଅପ୍‌ସରାମାନଙ୍କ ମଧ୍ୟରୁ କାହାକୁ ନା କାହାକୁ ବ୍ୟବହାର କରୁଥିଲେ । ଏହି ଅପ୍‌ସରାମାନେ ହେଉଛନ୍ତି ସ୍ୱର୍ଗରାଜ୍ୟର ଗଣିକା ।

ଦ୍ୱାପର ଯୁଗରେ ଷୋହଳ ସହସ୍ର କୃଷ୍ଣ ପତ୍ନୀ (ଗୋପୀ) ଜମ୍ବୁବତୀ ପୁତ୍ର ଶାମ୍ବକୁ ଦେଖି ମୋହିତ ଓ କାମାତୁର ହୋଇଥିଲେ । ଏହା ଫଳରେ କୃଷ୍ଣ ସେମାନଙ୍କୁ ଦସ୍ୟୁମାନେ ଅପହରଣ କରି ନେବେ ବୋଲି ଅଭିଶାପ ଦେଇଥିଲେ । କୃଷ୍ଣଙ୍କ ମୃତ୍ୟୁପରେ ଦସ୍ୟୁ ଅପହୃତା ହୋଇ ଏହି ଷୋହଳ ସହସ୍ର ନାରୀ ଦାଲଭ୍ୟ ଋଷିଙ୍କ ନିର୍ଦ୍ଦେଶରେ ରାଜଭବନ ବା ଦେବ ମନ୍ଦିରରେ 'ବେଶ୍ୟାଧର୍ମ' ପାଳନ କରି 'ଅନଂଗବ୍ରତ' ପାଳନ କରି ଶାପମୁକ୍ତ ହୋଇଥିବା କଥା 'ମତ୍ସ୍ୟପୁରାଣ' ରେ ବର୍ଣ୍ଣିତ ଅଛି ।

ମହର୍ଷି ଉଦ୍ଦାଳକଙ୍କ ପତ୍ନୀକୁ ଜଣେ ଜୀର୍ଣ୍ଣଶୀର୍ଣ୍ଣ ଜର୍ଜର ବୃଦ୍ଧ ବ୍ରାହ୍ମଣ ପୁତ୍ର ଶ୍ୱେତକେତୁଙ୍କ ସାମ୍ନାରେ ହାତଧରି ବଣକୁ ଟାଣିନେବା ଘଟଣାରେ ମହର୍ଷି କୁପିତ ଓ ଶୋକମଗ୍ନ ପୁଅକୁ କହିଥିଲେ– 'ବତ୍ସ, ଏଥିରେ ଶୋକ କରିବାର କିଛି ନାହିଁ । ସନାତନ କାଳରୁ ଏମିତି ହୋଇ ଆସିଛି । ଏ ପୃଥିବୀର ପଶୁ, ପକ୍ଷୀ, ମଣିଷ ପ୍ରାଣୀ ମାତ୍ରକରେ ତୁ ଏକଥା ଦେଖିପାରିବୁ । ଆଉ ସେତେବେଳେ ତୁ ବୁଝିପାରିବୁ ଯେ ସ୍ତ୍ରୀଲିଙ୍ଗ ସବୁବେଳେ ଅନାବୃତ୍ତ, ବନ୍ଧନ ରହିତ ଏବଂ ଯଥେଚ୍ଛା ଭୋଗ କରିପାରେ । ହେ ବତ୍ସ, ଯୌନ ସଂପର୍କରେ ତ ପୁରୁଷ ଓ ସ୍ତ୍ରୀ ନିଃସନ୍ଦେହ ଭାବରେ ଗାଈ ଓ ବୃଷଭ ଭଳି ବ୍ୟବହାର କରିଥାନ୍ତି । ଏ ଗୋଧର୍ମ ଲାଗି କ୍ରୋଧ ଓ ଶୋକ କେମିତି । (ମହାଭାରତ)

ସେହି ମହାଭାରତରେ ପାଣ୍ଡୁ କୁନ୍ତିଙ୍କୁ କହିଛନ୍ତି :

–''ହେ ସୁସ୍ମିତା, ହେ ବରାନନେ । ପ୍ରାଚୀନ କାଳରେ ସ୍ତ୍ରୀମାନଙ୍କୁ ଘର ଭିତରେ ବନ୍ଦ କରି ରଖାଯାଉ ନଥିଲା । ସେମାନେ ଅନାବୃତ୍ତା, ବଂଧନରହିତ ଓ ମୁକ୍ତନାରୀ । ମୁକ୍ତ ଭାବରେ ବିଚରଣ କରୁଥିଲେ । ଏବଂ ଇଚ୍ଛାନୁସାରେ ବିଷୟସୁଖ ଭୋଗ କରୁଥିଲେ ।''



Digitized by srujanika@gmail.com

—''ହେ ଚାରୁହାସିନୀ, ମଦୟନ୍ତୀର କଥା ତ ସମସ୍ତେ ଜାଣନ୍ତି । ତା'ର କୌଣସି ସନ୍ତାନ ନ ଥିଲା । ତେଣୁ, ତା' ପତି ସୁହାସର ଅନୁମତି କ୍ରମେ ସେ ମହର୍ଷି ବଶିଷ୍ଠଙ୍କ ସହ ସମାଗତ କରି ଅଶ୍ମକ ନାମକ ପୁତ୍ର ଲାଭ କରିଥିଲେ ।

—''ହେ ଭୋରୁ ! ଅନେକ ପୁରୁଷଙ୍କ ସହିତ ଏମିତି ସଂପର୍କକୁ ସେ କାଳରେ ଅଧର୍ମ ମନେକରାଯାଉ ନଥିଲା । ତା' ବଦଳରେ ତାକୁ ଧର୍ମ ମନେକରାଯାଉଥିଲା । ଏବଂ ବିଷୟ ଭୋଗରେ କୌଣସି ରକମ ବଂଧନ ରହିବା ଉଚିତ ନୁହେଁ ।''

ଏଇଟା ଥିଲା ସେ ସମୟର ସର୍ବମାନ୍ୟ ପଦ୍ଧତି । ମତ୍ସ୍ୟପୁରାଣ, ଗରୁଡ଼ ପୁରାଣ, ଜାତକ କଥା, ବୃହଦ୍ କଥା ସରିତ ସାଗର, ଭର୍ତ୍ତୃହରିଂକ ଶୃଂଗାର ଶତକ, ମୃଚ୍ଛକଟିକମ୍ (ଶୁଦ୍ରକ), ପଦ୍ମ ପ୍ରାଭୃତକ, କାଳିଦାସଙ୍କ ରଚନାବଳୀରେ ମଧ୍ୟ ବେଶ୍ୟାମାନଙ୍କ ବର୍ଣ୍ଣନା ଦେଖିବାକୁ ମିଳେ । ତେବେ ଗୋଟାଏ କଥା ସତ୍ୟ ଯେ ବ୍ରାହ୍ମଣପ୍ରଧାନ ଆର୍ଯ୍ୟଧର୍ମ ନାରୀ ଲାଗି ଏକପତିବ୍ରତର ପ୍ରଚଳନ କରିଥିଲେ ମଧ୍ୟ ପତି ଲାଗି ଏକପତ୍ନୀବ୍ରତର ନିୟମ ନକରି ତାକୁ ସ୍ୱୈରାଚାରୀ କରିଦେଲା । ଅଥଚ ସବୁବେଳେ ନାରୀ ଉପରେ ହିଁ ଅଙ୍କୁଶ ପ୍ରୟୋଗ କରାଗଲା ଏବଂ ଏହା ଏ ପର୍ଯ୍ୟନ୍ତ ଚାଲିଆସିଛି ।

**ତନ୍ତ୍ର ଓ ବେଶ୍ୟାବୃତ୍ତି :**

"Women is my highest Dharma (Religion).
Women is my highest tapas (object of devotion),
Women is my Heaven. on my women being
satisfied, the whole world is satisfied."

_Tantra Mantra

୬୦୦ ଖ୍ରୀଷ୍ଟାବ୍ଦ ବେଳକୁ ବୌଦ୍ଧ ସାହିତ୍ୟରେ ତନ୍ତ୍ରର ଉଲ୍ଲେଖ ମିଳିଲେ ମଧ୍ୟ ଜରାୟୁ ଓ ଯୋନି ପୂଜା ଦୃଷ୍ଟିରୁ ଏହି ଶକ୍ତିଶାଳୀ ତନ୍ତ୍ରଧର୍ମର ଚେର ଖ୍ରୀଷ୍ଟପୂର୍ବ ୩୦ ହଜାର ବର୍ଷ ଆଗକୁ ମାଡ଼ି ଯାଇଛି । କେତେକେ ତନ୍ତ୍ରକୁ 'ଅଥର୍ବ ବେଦ' ବୋଲି ମଧ୍ୟ କହିଥାନ୍ତି ।

ଶକ୍ତିରୂପା ମହାକାଳୀ ଓ ପୁରୁଷରୂପ ମହାକାଳ ତନ୍ତ୍ର ଧର୍ମର ମୂଳ ଆଧାର । ଏହି ଧର୍ମ ନାରୀ ବା ଶକ୍ତିର ଉପାସନା ଉପରେ ପର୍ଯ୍ୟବେସିତ । ଏହି ଧର୍ମାବଲମ୍ବୀ ଶାକ୍ତମାନେ ଯୋନି ପୂଜା, ଯୋନି ଚକ୍ର, ଶ୍ରୀଚକ୍ର, ଭୈରବୀ ଚକ୍ର, ସିଦ୍ଧ ଚକ୍ର, କାଳ ଚକ୍ର ପୂଜା ସଂଗେ ଯୋନି ଲିଙ୍ଗମ୍‌କୁ ସୃଷ୍ଟି ଓ ବିଧ୍ୱଂସର ମୂର୍ତ୍ତରୂପ ଭାବେ ପରିକଳ୍ପନା କରି ଯୌନଭୋଗ ମାଧ୍ୟମରେ କୁଣ୍ଡଳିନୀକୁ ଜାଗ୍ରତ କରି ମୁକ୍ତିର ମାର୍ଗ ସଂଧାନ କରନ୍ତି ।

ନାରୀ, ମଦ, ମାଂସ, ମାଛ ଓ ମଳା ହେଉଛି ଏହି ଆଗମ ଧର୍ମର ମୂଳ ଉପଜୀବ୍ୟ । ତାନ୍ତ୍ରିକମାନେ ନାରୀକୁ ଗଭୀର ସମ୍ମାନ ଦେଇ ତାକୁ ଶକ୍ତିର ଅବତାର ରୂପେ ଗ୍ରହଣ କରନ୍ତି ଓ



Digitized by srujanika@gmail.com

ନାରୀ ପ୍ରତି ଅପମାନକୁ ସବୁଠାରୁ ବଡ଼ ଅପରାଧ ମନେକରନ୍ତି । ସେମାନଙ୍କ ବିଶ୍ୱାସ ଯେ ସବୁ ଶକ୍ତି ଓ ମୁକ୍ତିର ମୂଳାଧାର ହେଉଛି ସଂଭୋଗ ଓ ଶକ୍ତି ସଂଗମ । କାଳାର୍ଣ୍ଣବ ତନ୍ତ୍ର ଏହି ସମ୍ଭୋଗ ଉପରେ ପର୍ଯ୍ୟବେସିତ ।

ପୁରୁଷ ଓ ସ୍ତ୍ରୀକୁ ତନ୍ତ୍ର ଶିବ ଓ ପାର୍ବତୀଙ୍କ ପ୍ରତିରୂପ ଭାବେ ଗ୍ରହଣ କରେ । ତନ୍ତ୍ର ମତରେ ସମ୍ଭୋଗ ଏକ ପବିତ୍ର କ୍ରିୟା ।

ସଂସ୍କୃତରେ ତନ୍ତ୍ରର ଅର୍ଥ ହେଉଛି– ପବିତ୍ର ମାର୍ଗ ଓ ମୌଳିକ ନୀତି । ଯୌନଠାରୁ ବଳି ମୌଳିକ ଜିନିଷ ଆଉ କ'ଣ ଥାଇପାରେ ? ଶକ୍ତି ସମାଗ ତନ୍ତ୍ରରେ ଯୌନାଚାରକୁ ଆତ୍ମାର ମୁକ୍ତି ଭାବରେ ବର୍ଣ୍ଣନା କରାଯାଇଛି । ସାମୁହିକ ଯୌନାଚାର ଆଦିମ ବେଶ୍ୟାବୃତ୍ତିର ଏକ ଧର୍ମ ସମ୍ମତ ରୂପ । ବୈଦିକୋତ୍ତର ଓ ସିନ୍ଧୁ ସଭ୍ୟତା କାଳରେ ମଧ୍ୟ ଯୌନଧର୍ମର ମହତ୍ତ୍ୱ ରହିଥିଲା । ନଗ୍ନ ଯୋନିପୂଜା ନିମନ୍ତେ ସାଧକମାନେ ଦେବଦାସୀ ଓ ବେଶ୍ୟାମାନଙ୍କୁ ମଧ୍ୟ ଉପଯୋଗ କରିଥାନ୍ତି ।

**ଭକ୍ତିମାର୍ଗ ଓ ବେଶ୍ୟାବୃତ୍ତି :**

ବୈଦିକ କାଳ ପରେ ଭାରତୀୟ ଧାର୍ମିକ ଜୀବନରେ ଭକ୍ତିମାର୍ଗ ଏକ ବିଶେଷ ସ୍ଥାନ ଅଧିକାର କରି ନେଇଥିଲା । କିନ୍ତୁ ବୌଦ୍ଧଧର୍ମର ମହାଯାନ ପ୍ରଭାବରେ ତାହା ପରବର୍ତ୍ତୀ କାଳରେ ବିଶେଷ ପ୍ରଭାବଶାଳୀ ହୋଇପଡ଼ିଲା । ପୂର୍ବର ଭକ୍ତିମାର୍ଗରେ ଇଷ୍ଟଦେବତାଙ୍କ ପୂଜା, ଭଜନ, କୀର୍ତ୍ତନ କରାଯାଉଥିଲା । ପରେ ଇଷ୍ଟଦେବଙ୍କ ସଂଖ୍ୟା ବୃଦ୍ଧି ପାଇବା ସାଙ୍ଗକୁ ବୈଷ୍ଣବ, ଶୈବ ସଂପ୍ରଦାୟ ଆଦିର ମଧ୍ୟ ବୃଦ୍ଧି ଘଟିଲା । ସେହି ଅନୁପାତରେ ଗୋଟାଏ ମୂଳ ପୁରାଣରୁ ଅଷ୍ଟାଦଶ ମହାପୁରୁଷ ଓ ଅଷ୍ଟାଦଶ ପୁରାଣ ହେଲା ।

ମହାଯାନମାନଙ୍କ ବୋଧିସତ୍ତ୍ୱ ଆଦିଙ୍କ ପୂଜା, ଗୁଣଗାନ, ଭଜନ, କୀର୍ତ୍ତନ ଫଳରେ ଜନସାଧାରଣଙ୍କ ଆକର୍ଷଣ ସେମାନଙ୍କ ପ୍ରତି ବୃଦ୍ଧି ପାଇବାକୁ ଲାଗିଲା । ହିନ୍ଦୁ ଧର୍ମ ମହାଯାନର ଏହି ବିଶେଷତ୍ୱକୁ ଗ୍ରହଣ କରି ବୌଦ୍ଧ ଧର୍ମର କ୍ରମବର୍ଦ୍ଧମାନ ଲୋକପ୍ରିୟତାକୁ ଅଟକାଇ ଦେଲା । ଏ କଥା ସତ ଯେ ମହାଯାନ ଭକ୍ତି ମାର୍ଗକୁ ସମୃଦ୍ଧ କଲା । ତେବେ ଏହି ଭକ୍ତିମାର୍ଗର ଚେର ଋକ୍ ବେଦରେ ମଧ୍ୟ ଦେଖାଯାଏ ।

ଭକ୍ତି ମାର୍ଗ ଚରମ ସୀମାରେ ପହଞ୍ଚିଲା ପରେ ସେଥିରେ ନାନା ରକମ ବିକୃତି ଆସିଲା । ଈଶ୍ୱର ଭକ୍ତି ନାମରେ ଅନାଚାର ସମାଜରେ ବ୍ୟାପିଲା । ବେଶ୍ୟାବୃତ୍ତି ମଧ୍ୟ ଏକ ପ୍ରଧାନ ଅଂଶ ଏ ଅନାଚାରର ।



Digitized by srujanika@gmail.com

## ଲୋକାୟତ ଦର୍ଶନ ଓ ବେଶ୍ୟାବୃତ୍ତି :

ମହର୍ଷି ଚାର୍ବାକ ଥିଲେ ଲୋକାୟତ ଦର୍ଶନର ଆଦି ଆଚାର୍ଯ୍ୟ । ବସ୍ତୁବାଦୀ ଭୋଗବାଦ ଥିଲା ଏ ଦର୍ଶନର ମୂଳ ଦର୍ଶନ । ଆପାତଃ ନାସ୍ତିକ ଏହି ଧର୍ମତତ୍ତ୍ୱ କେବଳ ଇହଲୋକକୁ ହିଁ ସତ୍ୟ ମଣିଲା । ପ୍ରତ୍ୟକ୍ଷ ସତ୍ୟଧର୍ମୀ ଦର୍ଶନ, ଦ୍ରବ୍ୟପ୍ରାପ୍ତି ଓ ଭୋଗ ସର୍ବସ୍ୱ ଥିଲା । ଏହି ନିରୀଶ୍ୱରବାଦୀ ବାମମାର୍ଗୀ ଦର୍ଶନର ମୂଳତତ୍ତ୍ୱ ଥିଲା– 'ଯାବଦ୍ ଜୀବେଦ୍ ସୁଖଂ ଜୀବେଦ୍' ଋଣଂକୃତ୍ୱା ଘୃତଂ ପିବେଦ୍ । 'ପରଲୋକ' ପରଜନ୍ମରେ ବିଶ୍ୱାସ ନ କରି ଏ ଦର୍ଶନ ବେଦକାରମାନଙ୍କୁ ''ଧୂର୍ତ୍ତ, ଭଣ୍ଡ, ନିଶାଚର'' ଆଦି ଆଖ୍ୟା ଦେଇଥିଲା । ଏହି ଦର୍ଶନର ବାମମାର୍ଗ, କାମାଚାର ଥିଲା ସଂଭୋଗ ତନ୍ତ୍ର ଓ ବେଶ୍ୟାବୃତ୍ତି ଲାଗି ବିସ୍ତୀର୍ଣ୍ଣ କ୍ଷେତ୍ର ।

## ରାଜନୈତିକ ମହାସ୍ତ୍ର : ବିଷକନ୍ୟା :

କୌଟିଲ୍ୟଙ୍କ କାଳଯାଁଏ ଆସୁଁ - ଆସୁଁ ସୁନ୍ଦରୀ ଗଣିକାମାନେ ବ୍ୟାପକ ସ୍ତରରେ ରାଜନୈତିକ ବ୍ୟବହାରର ବସ୍ତୁ ହୋଇ ଯାଇଥିଲେ । ଅତ୍ୟନ୍ତ ସୁନ୍ଦରୀ ବାଳଗଣିକାଙ୍କ ଉପରେ ବିଭିନ୍ନ ରାସାୟନିକ ପ୍ରୟୋଗ କରି ଏକ ରାଜନୈତିକ ମହାସ୍ତ୍ର ଭାବରେ ବିଷକନ୍ୟା ସୃଷ୍ଟି କରା ହେଲା । ସେମାନଙ୍କୁ ଗୁପ୍ତଶତ୍ରୁମାନଙ୍କ ବିନାଶ ନିମନ୍ତେ ବ୍ୟବହାର କରାଗଲା । ଯିଏ ବି ଏମାନଙ୍କ ଚୁମ୍ବନ, ଲେହନ, ଶରୀର ଭୋଗ କରୁଥିଲା, ତାର ମୃତ୍ୟୁ ଥିଲା ଅବଶ୍ୟମ୍ଭାବୀ । ପୂତନା ମଧ୍ୟ ଏଭଳି ଏକ ବିଷକନ୍ୟା ଥିଲା । ପୁରାଣ ଆଦି ମଧ୍ୟ ଏମିତି ଅନେକ ଘଟଣାରେ ପରିପୂର୍ଣ୍ଣ ହୋଇଥିବାର ଦେଖିବାକୁ ମିଳେ ।

ଇନ୍ଦ୍ରଙ୍କ ଆସନ ଟଳମଳ ହେଲାବେଳେ ରଂଭା, ମେନକା, ଉର୍ବଶୀ ଆଦି ସ୍ୱର-ବେଶ୍ୟାଙ୍କ ରାଜନୈତିକ ବ୍ୟାବହାର ଦେଖିବାକୁ ମିଳେ । ବୈଦିକ କାଳରେ ଅପସରାମାନଙ୍କୁ ଛାଡ଼ି ସାଧାରଣ ବେଶ୍ୟାମାନଙ୍କୁ ସାମାଜିକ ସମ୍ମାନ ଦିଆଯାଉ ନ ଥିଲା ଏବଂ ତାଙ୍କୁ ପତିତା ମନେ କରାଯାଉଥିଲା ।

ମହାଭାରତ କାଳରେ ବେଶ୍ୟାମାନଙ୍କ ସାମାଜିକ ମର୍ଯ୍ୟାଦା ବହୁ ପରିମାଣରେ ବୃଦ୍ଧି ପାଇଥିଲା । ମହାଭାରତ ଯୁଦ୍ଧରେ ପାଣ୍ଡବ ଓ କୌରବମାନେ ଗଣିକାମାନଙ୍କୁ ନିଜ ସହିତ ରଖୁଥିଲେ । ସେମାନଙ୍କ ବିନା କୌଣସି ଧାର୍ମିକ ଅନୁଷ୍ଠାନ ପୂରା ହେଉ ନଥିଲା । ଆଜି ମଧ୍ୟ ବେଶ୍ୟାଦ୍ୱାରର ମାଟିକୁ ଅତି ପବିତ୍ର ବୋଲି ମନେ କରାଯାଏ ।

ଶିଳାଲେଖ ଓ ଅନ୍ୟରକମ ଲିଖିତ ଇତିହାସର ପ୍ରାରମ୍ଭ ବୌଦ୍ଧ କାଳରୁ । ସମ୍ରାଟ ଅଶୋକଙ୍କ ଭଳି ବିଜୟୀ ରାଜନ୍ୟବର୍ଗ ବାରମ୍ବାର ଯୁଦ୍ଧ ବିଭୀଷିକାରେ କ୍ଲାନ୍ତ, ଅବସନ୍ନ ହୋଇ ପଡ଼ିଥିଲେ । ଏହି କ୍ରମାଗତ ଯୁଦ୍ଧ ଫଳରେ ବେଶ୍ୟାମାନଙ୍କ ସଂଖ୍ୟା ଅତ୍ୟଧିକ ପରିମାଣରେ ବୃଦ୍ଧି ପାଇଥିଲା । ଫଳରେ ସେତେବେଳେ ସେମାନଙ୍କ ଦର ମଧ୍ୟ ଧାର୍ଯ୍ୟ କରାଯାଇଥିଲା । ଗଣିକା ଆମ୍ରପାଲିର ଦର ଥିଲା ରାତିକ ଲାଗି ୫୦୦ କୃଷକ । କିଶୋରୀ ଝିଅମାନଙ୍କୁ ପ୍ରଶିକ୍ଷଣ



Digitized by srujanika@gmail.com

ଦେଇ ଚଉଷଠି କଳାରେ ପାରଙ୍ଗମ କରି ସେମାନଙ୍କ ଦ୍ୱାରା ପେସା କରାଯାଉଥିଲା । ସେମାନଙ୍କ ଲାଗି ବିବାହ ଓ ସନ୍ତାନ ଉତ୍ପତ୍ତି ନିଷେଧ ଥିଲା ।

**ଜନପଦ କଲ୍ୟାଣୀର ରାଜ୍ୟ ସଂରକ୍ଷଣ :**

ବୌଦ୍ଧ କାଳରେ ବେଶ୍ୟାମାନଙ୍କୁ ରାଜ୍ୟ ପକ୍ଷରୁ ସଂରକ୍ଷଣ ଦିଆଯାଉଥିଲା । ଏମାନେ ଥିଲେ ସମାଜର ସମ୍ମାନିତ ନାଗରିକା । ଧନୀମାନେ ଏମାନଙ୍କୁ ନିଜର ପତ୍ନୀ ଭଳି ଆଦର କରୁଥିଲେ । ଏହି ଗଣିକାମାନେ ରଥ ଆରୋହଣ କରୁଥିଲେ । କେତେକ ଜାତକ କଥାରେ ବର୍ଣ୍ଣିତ ହୋଇଛି ଯେ ଏହି ବେଶ୍ୟାମାନେ ବିଭିନ୍ନ ସମାରୋହକୁ ଗଲାବେଳେ ଗୃହିଣୀମାନେ ରାସ୍ତାର ଉଭୟ ପଟରେ ଠିଆ ହୋଇ ପୁଷ୍ପ ବର୍ଷଣ କରୁଥିଲେ । ଏମାନଙ୍କୁ 'ଜନପଦ କଲ୍ୟାଣୀ' ବୋଲି କୁହାଯାଉଥିଲା ।

ଏହି ଜନପଦ କଲ୍ୟାଣୀମାନେ ଲୋକଙ୍କ ମନୋରଞ୍ଜନ କରିବା ସାଙ୍ଗକୁ ରାଜାଙ୍କ ପରାମର୍ଶଦାତ୍ରୀ, ସହଚରୀ ଓ ସଖୀ ମଧ୍ୟ ଥିଲେ । ରାଜା ବିକ୍ରମାଦିତ୍ୟଙ୍କ ପ୍ରେରଣାଦାତ୍ରୀ ଥିଲେ ଗଣିକା ମଦନମାଳା, ଚନ୍ଦ୍ରଗୁପ୍ତ ମୌର୍ଯ୍ୟଙ୍କ ପରାମର୍ଶଦାତ୍ରୀ ଥିଲେ ଗଣିକା ଚିତ୍ରଲେଖା । ଅଶୋକ ଚନ୍ଦ୍ରସେଣାଙ୍କ ସାହାଯ୍ୟରେ କଳିଙ୍ଗ ବିଜୟ କରିଥିଲେ । ସମ୍ରାଟ ହର୍ଷବର୍ଦ୍ଧନ ନିଜେ ପାଦରେ ଚାଲି ଚାଲି ଗଣିକା ଦେବଦତ୍ତାଙ୍କ ପ୍ରାସାଦକୁ ବିଜେ କରୁଥିଲେ । ବସନ୍ତ ସେନା, ମହାନନ୍ଦା, ପିଙ୍ଗଳା ଆଦି ଗଣିକାଙ୍କ ଚର୍ଚ୍ଚା ସଂସ୍କୃତ ସାହିତ୍ୟ, ଭାଗବତ ଗୀତାରେ ଦେଖିବାକୁ ମିଳେ ।

'ମୃଚ୍ଛକଟିକମ୍' ନାଟକ ମାଧ୍ୟମରେ ଶୁଦ୍ରକ ଗଣିକା ବସନ୍ତ ସେନାକୁ ଅମର କରି ଯାଇଛନ୍ତି । ଅଶ୍ୱଘୋଷ, କାଳିଦାସ, ଭାନ, ହର୍ଷ, ଭବଭୂତିଙ୍କ ରଚନାରେ ଅନେକ ଗଣିକାଙ୍କ ଉଲ୍ଲେଖ ରହିଛି । 'ବୈରାଗ୍ୟ ଶତକ'ରେ ତ୍ୟାଗବାତୀ, ଦେଶଗତ ପ୍ରାଣା ଗଣିକାର ଆଦର୍ଶ ଆକାଶ ସ୍ପର୍ଶ କରିଛି । ଗଣିକା ପିଙ୍ଗଳା ଆଧ୍ୟାତ୍ମିକ ଦର୍ଶନର ଉର୍ଦ୍ଧ୍ୱଗାମିତାର ପ୍ରତୀକ ।

ଆଚାର୍ଯ୍ୟ ବାତ୍ସାୟନ ତାଙ୍କର ବିଶ୍ୱବିଖ୍ୟାତ 'କାମସୂତ୍ର'ରେ ବେଶ୍ୟାମାନଙ୍କ ଶ୍ରେଣୀ ବିନ୍ୟାସ କରି କହିଛନ୍ତି ଯେ ଜଣେ ପୁରୁଷ ସହିତ ସମ୍ପର୍କ ରଖୁଥିବା ସ୍ତ୍ରୀ 'ଏକ ପରିଗ୍ରହ', ଅନେକଙ୍କ ସହ ସଂପର୍କକାରିଣୀ 'ଅନେକ ପରିଗ୍ରହ' ଓ କୌଣସି ନିର୍ଦ୍ଦିଷ୍ଟ ବ୍ୟକ୍ତି ବିଶେଷ ସହ ସମ୍ପର୍କ ରଖୁ ନଥିବା ସ୍ତ୍ରୀକୁ ''ଅପରିଗ୍ରହ' ବୋଲି କୁହାଯାଏ । ଏହା ସେତେବେଳେ ବେଶ୍ୟାବୃତ୍ତିର ବ୍ୟାପକତାର ଉଦାହରଣ ।

**ଅର୍ଦ୍ଧକାଶୀର ଅର୍ଥଶାସ୍ତ୍ର :**

ବୈବାହିକ ଜୀବନର ସୁଖ ନପାଇ କାଶୀର ଜଣେ ବିଭବଶାଳୀଙ୍କ କନ୍ୟା ନିଜକୁ ଗଣିକାବୃତ୍ତିରେ ନିୟୋଜିତ କରିଥିଲେ । ତାଙ୍କ ସହିତ ଗୋଟିଏ ରାତ୍ରିଯାପନର ମୂଲ୍ୟ ତତ୍‌କାଳୀନ



Digitized by srujanika@gmail.com

କାଶୀ ନରେଶଙ୍କ ଅଧା ଦିନର ଆୟ ସହିତ ସମାନ । ତେଣୁ ଲୋକେ ତାଙ୍କୁ ''ଅର୍ଦ୍ଧକାଶୀ'' ବୋଲି ସମ୍ବୋଧନ କରୁଥିଲେ । ଅବଶ୍ୟ ପରବର୍ତ୍ତୀ ସମୟରେ ଅର୍ଦ୍ଧକାଶୀ ଜଣେ ଶ୍ରେଷ୍ଠ ଭିକ୍ଷୁଣୀରେ ପରିଣତ ହୋଇଥିଲେ । ଅର୍ଥଶାସ୍ତ୍ର ପ୍ରଣେତା କୌଟିଲ୍ୟ ବେଶ୍ୟାମାନଙ୍କ ନିମନ୍ତେ ବିଭିନ୍ନ ନିୟମ ପ୍ରଣୟନ କରି ସେମାନଙ୍କ ଦର ମଧ୍ୟ ଧାର୍ଯ୍ୟ କରିଥିଲେ । ଏହି ଘଟଣାରୁ ସେତେବେଳେ ସମାଜରେ ଗଣିକାମାନଙ୍କ କେତେ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ରହିଥିଲା ତାହା ଜଣାପଡ଼େ ।

ଅର୍ଥଶାସ୍ତ୍ରର ଦ୍ୱିତୀୟ ଅଧିକରଣର ୪୪ତମ ପ୍ରକରଣରେ ନଗରରେ ବେଶ୍ୟାମାନଙ୍କ ରକ୍ଷଣାବେକ୍ଷଣ ଓ ସଂରକ୍ଷଣ, ନିରାପତ୍ତା ନିମନ୍ତେ ''ଗଣିକାଧ୍ୟକ୍ଷ'' ନିଯୁକ୍ତିର ବ୍ୟବସ୍ଥା କରା ହୋଇଥିଲା । ବେଶ୍ୟା ସଂସାର ପରିଚାଳନାର ସମସ୍ତ ଦାୟ ଦାୟିତ୍ୱ ଗଣିକାଧ୍ୟକ୍ଷଙ୍କର ।

ଏହି ଗଣିକାଧ୍ୟକ୍ଷମାନଙ୍କର ବିଭିନ୍ନ କର୍ତ୍ତବ୍ୟ ଓ ଦାୟିତ୍ୱ ବିଷୟରେ ଉଲ୍ଲେଖ କରି କୁହାଯାଇଛି ଯେ– ''ବେଶ୍ୟାବଂଶରୁ ଉତ୍ପନ୍ନ ହୋଇଥାନ୍ତୁ କି ହୋଇ ନଥାନ୍ତୁ ସୁନ୍ଦର, ଗୀତ ନୃତ୍ୟ ପ୍ରବୀଣା ଚତୁର ଯୁବତୀମାନଙ୍କୁ ବାର୍ଷିକ ହଜାରେ ପଣ ଦରମା ଦେଇ ଗଣିକାଧ୍ୟକ୍ଷ ସେମାନଙ୍କୁ ବେଶ୍ୟାବୃତ୍ତି ପାଇଁ ରଖିପାରିବେ । ଏହି ଯୁବତୀମାନଙ୍କର ସହାୟିକା ଭାବରେ ଅନ୍ୟ ଜଣେ ବେଶ୍ୟାକୁ ପାଞ୍ଚ ଶହ ପଣ ଦେଇ ରଖାଯାଇପାରିବ । ଯୁବାବସ୍ଥା ଅତିକ୍ରାନ୍ତ ହେଲାପରେ ବେଶ୍ୟାମାନଙ୍କୁ ଧାତ୍ରୀ ଭାବରେ ନିଯୁକ୍ତି ଦିଆଯିବ । ବେଶ୍ୟା ଓ ତାଙ୍କର ସହାୟିକା ଯୌବନ ଅତିକ୍ରାନ୍ତ ହେଲାପରେ କୋଷ୍ଠାଗାର ବା ପାକ ଗୃହରେ କାର୍ଯ୍ୟ କରିପାରିବେ ।''

ସାଧାରଣ ବେଶ୍ୟାମାନଙ୍କ ନିମନ୍ତେ ମଧ୍ୟ କୌଟିଲ୍ୟ ବିଭିନ୍ନ ନୀତି ନିୟମ ପ୍ରଣୟନ କରିଥିଲେ । ବେଶ୍ୟାମାନଙ୍କ ଆୟବ୍ୟୟ, ସଂଚୟ ଏବଂ ଦାୟ ଭାଗ ସୁନିଶ୍ଚିତ କରିବାର ବ୍ୟବସ୍ଥା କରିଥିଲେ । ସେମାନଙ୍କ ବାଜେ ଖର୍ଚ୍ଚ ଉପରେ ନିୟନ୍ତ୍ରଣ ଜାରି କରିଥିଲେ:

''– ଯଦି କୌଣସି ବ୍ୟକ୍ତି କୌଣସି ଅନିଚ୍ଛୁକ । ଗଣିକା କନ୍ୟା ଭାବରେ ବଳ ପ୍ରୟୋଗ କରେ ବା ଯଦି କେହି ସମ୍ମତ କନ୍ୟାକୁ ମଧ୍ୟ ଧର୍ଷଣ କରେ, ସେ ବ୍ୟକ୍ତିକୁ ଉତ୍ତମ ଦଣ୍ଡ, ସାହସ ଦଣ୍ଡ ଦିଆଯିବା ଉଚିତ । ବା କେହି ଯଦି ଅନିଚ୍ଛୁକ ବେଶ୍ୟାକୁ ବାରଣ କରେ, ତାକୁ ଅଟକାଏ, କଚାଡ଼ି ଦିଏ ବା ତା' ଶରୀର, ରୂପକୁ କଦାକାର କରିବାର ଚେଷ୍ଟା କରେ, ତାକୁ ହଜାରେ ପଣ ଜୋରିମାନା ଦଣ୍ଡ ପ୍ରଦାନ କରାଯିବ । ଯଦି କୌଣସି ବେଶ୍ୟା କୌଣସି ପୁରୁଷଙ୍କୁ ହତ୍ୟା କରେ, ତେବେ ସେହି ବେଶ୍ୟାକୁ ହତ୍ୟା ଅପରାଧର ଦଣ୍ଡ ରୂପେ ଜୀବନ୍ତ ଦଗ୍ଧ କରାଯିବା ଉଚିତ ବା ଗହଣା, ଅଳଙ୍କାର ନିମନ୍ତେ ନିର୍ଦ୍ଧାରିତ ମୂଲ୍ୟଠାରୁ ଅଧିକା ଧନ ଗ୍ରହଣ କରେ ବା ଉପଯୁକ୍ତ ପାରିଶ୍ରମିକ ନେଇ ତା' ବିନିମୟରେ ପୁରୁଷକୁ ସନ୍ତୁଷ୍ଟ ନ କରେ, ତେବେ ତାକୁ ନିର୍ଦ୍ଧାରିତ ମୂଲ୍ୟ ଅପେକ୍ଷା ଆଠଗୁଣ ଅଧିକା ଧନ ଜୋରିମାନା ସ୍ୱରୂପ ପୁରୁଷକୁ ଦେବାକୁ ପଡ଼ିବ । ପ୍ରତ୍ୟେକ ବେଶ୍ୟା ତାର ଆୟ ବ୍ୟୟ, ବୃତ୍ତି, ସ୍ଥିତି ଏବଂ କେଉଁ ପୁରୁଷ ସହିତ ତା'ର ସମ୍ପର୍କ ସେ ସବୁ ଗଣିକାଧ୍ୟକ୍ଷଙ୍କୁ ସୂଚିତ କରିବା ବାଧ୍ୟତାମୂଳକ ।''



Digitized by srujanika@gmail.com

ବେଶ୍ୟାମାନଙ୍କ ଅନ୍ୟ ଉପଯୋଗିତା ସମ୍ପର୍କରେ ମଧ୍ୟ କୌଟିଲ୍ୟ ଶାସକୀୟ କର୍ତ୍ତବ୍ୟ ନିର୍ଦ୍ଧାରଣ କରିଥିଲେ ।

– ଯେଉଁ ବେଶ୍ୟାମାନେ ଗଣିକା, ଦାସୀ, ନଟୀ ଆଦିଙ୍କୁ ନୃତ୍ୟ, ଗୀତ, ବାଦ୍ୟ, ଅକ୍ଷର ବିଜ୍ଞାନ, ଚିତ୍ରକଳା, ବୀଣା, ବଂଶୀ, ମୃଦଙ୍ଗବାଦନ, ଶରୀର, ରୂପଚର୍ଯ୍ୟା ଆଦି ବିଷୟରେ ଶିକ୍ଷା ଦେବେ, ସେମାନଙ୍କୁ ରାଜକୋଷରୁ ରାଜାଙ୍କ ପକ୍ଷରୁ ଉପଯୁକ୍ତ ପାଉଣା ଦିଆଯିବ ।'

– ସମସ୍ତ ତାଳ ଜାଣିଥିବା ବେଶ୍ୟାପୁତ୍ରମାନଙ୍କୁ ନାଟ୍ୟାଭିନୟ ଶିକ୍ଷା ଦିଆଯିବା ବିଧେୟ ।''

ମୌର୍ଯ୍ୟ କାଳରେ କୌଟିଲ୍ୟ ବେଶ୍ୟାମାନଙ୍କ ଦ୍ୱାରା ରାଜକୋଷ ଲାଗି ବ୍ୟାପକ ଧନ ସଂଗ୍ରହ କରାଇଥିଲେ । ଗଣିକାଧ୍ୟକ୍ଷ ସମଗ୍ର ନଗରର ବେଶ୍ୟାଙ୍କ ନିରୀକ୍ଷଣ କରୁଥିଲେ । ଗଣିକାମାନେ ରାଜକୀୟ ସେବାର ଏକ ମୁଖ୍ୟ ଅଙ୍ଗ ଥିଲେ ଓ ସେମାନଙ୍କ ଦ୍ୱାରା ରାଜକୋଷ ପ୍ରଚୁର ମାତ୍ରାରେ ବୃଦ୍ଧି ପାଉଥିଲା । ମୌର୍ଯ୍ୟ କାଳରେ ଗଣିକାବୃତ୍ତି ରାଜ୍ୟର ଏକ ମୁଖ୍ୟ ଆୟକରୀ ବ୍ୟବସାୟ ଥିଲା ।

**ପ୍ରେମ ଓ ତ୍ୟାଗର ଜୀବନ୍ତ ପ୍ରତିମା :**

ଜୈନ କାଳରେ ଗଣିକାମାନେ ସମ୍ମାନୀୟ ଜୀବନଯାପନ କରୁଥିଲେ । ଏହି ଗଣିକାମାନେ ଥିଲେ ପ୍ରେମ ଓ ତ୍ୟାଗର ଜୀବନ୍ତ ପ୍ରତିମା ।

ଗଣିକା ଗୁଣବତୀଙ୍କ ଘରୁ ତାଙ୍କର କୌଣସି ପ୍ରେମିକ ଖାଲି ହାତରେ କେବେହେଲେ ଫେରୁ ନଥିଲେ । ସେ ନିଜ ପ୍ରେମିକମାନଙ୍କୁ କିଛି ନା କିଛି ବହୁମୂଲ୍ୟ ଉପହାର ଦେଇ ବିଦା କରୁଥିଲେ ।

ଗଣିକାମାନଙ୍କ ଦେଶ ପ୍ରେମ ମଧ୍ୟ ଥିଲା ଅତୁଳନୀୟ । ସେନାପତି ଜୀବଗୁପ୍ତଙ୍କ ନିମନ୍ତେ ଗଣିକା ଚନ୍ଦ୍ରଲେଖା ତାଙ୍କର ସର୍ବସ୍ୱ ଅର୍ପଣ କରିଥିଲେ । ଅନ୍ୟ ଜଣେ ଗଣିକା କୁମୁଦିକା ଅସ୍ତ୍ରଶସ୍ତ୍ର ଧାରଣ କରି ତାଙ୍କ ପ୍ରେମିକ ସହିତ ଯୁଦ୍ଧକ୍ଷେତ୍ରରେ ଅବତୀର୍ଣ୍ଣ ହୋଇଥିଲେ । ରୂପ ସୁନ୍ଦରୀ ସହଜା ନିଜ ପ୍ରେମିକ ସଙ୍ଗେ ବନ୍ଦୀ ହୋଇ ତାଙ୍କ ଚିତାଗ୍ନିରେ ସତୀ ହୋଇଥିଲେ । ସେହିପରି ଗଣିକା ଜୟମତୀ ନିଜ ପ୍ରେମିକ ଉତ୍କଳଙ୍କ ସଙ୍ଗେ ସତୀ ହୋଇଥିଲେ । ଗଣିକା ରୂପାଣିକା ନିଜର ସମସ୍ତ ବୈଭବ ପରିତ୍ୟାଗ କରି ନିଜ ଦରିଦ୍ର ପ୍ରେମକ ସହିତ ପଳାୟନ କରିଥିଲେ । ବିବାହ କଲାପରେ ଗଣିକା ମାଧବୀ ଆଜୀବନ ପତିବ୍ରତା ହୋଇ ରହିଥିଲେ । ବସନ୍ତସେନା ପ୍ରେମୀ ଚାରୁଦତ୍ତଙ୍କ ସକାଶେ ଅଶେଷ କଷ୍ଟ ଭୋଗ କରିଥିଲେ ।

**ମଧ୍ୟଯୁଗରେ ଗଣିକା :**

ରାଜପୁତ କାଳ ବା ମଧ୍ୟଯୁଗରେ ରାଜସ୍ଥାନର 'ପାତୁର' ବା ଗଣିକାମାନେ ସାମନ୍ତୀ ଗୌରବର ପ୍ରତୀକ ଥିଲେ । ଏମାନଙ୍କ ଲାଗି ଅନେକ ଯୁଦ୍ଧ ବିଗ୍ରହ ମଧ୍ୟ ହୋଇଛି । ସେତେବେଳେ ରାଜଭୋଗ୍ୟା ଓ ଜନଭୋଗ୍ୟା ନାମରେ ଦୁଇ ପ୍ରକାର ବେଶ୍ୟାଙ୍କ ପରିଚୟ ମିଳେ ।



Digitized by srujanika@gmail.com

ରାଜଭୋଗ୍ୟା ଗଣିକାମାନେ ଥିଲେ ଅତ୍ୟନ୍ତ ଶକ୍ତି ସମ୍ପନ୍ନା । ଏମାନଙ୍କ ଶକ୍ତି ରାଜଶକ୍ତିର ସମାନ୍ତର ଥିଲା । ଅନେକତ୍ର ଏମାନଙ୍କ ଆଦେଶ ରାଜାଦେଶଠାରୁ ଥିଲା ଅଧିକ ଶକ୍ତିଶାଳୀ । ଏମାନଙ୍କ ବୈଭବ ରାଜବୈଭବଠାରୁ କୌଣସି ଗୁଣରେ କମ୍ ନ ଥିଲା । ଏମାନଙ୍କ ପାଖରେ ସୁରକ୍ଷା ସୈନିକ ରହୁଥିଲେ । ଜନଭୋଗ୍ୟା ଗଣିକାମାନଙ୍କ ଅବସ୍ଥା ଆଜିର ସାଧାରଣ ବେଶ୍ୟାଙ୍କଠାରୁ ଉନ୍ନତ ନ ଥିଲା । ଟୋପାଏ ମଦ ଓ କେଇଟା ଟଙ୍କା ଲାଗି ମଦ୍ୟପ ଗରାଖମାନଙ୍କ ସହିତ ସେମାନଙ୍କୁ ଗଣ୍ଡଗୋଳ କରିବାକୁ ପଡୁଥିଲା ।

ଏକାଦଶ ଶତାବ୍ଦୀ ପ୍ରାରମ୍ଭ କାଳରୁ ବେଶ୍ୟାମାନଙ୍କ ସ୍ଥିତି କ୍ରମଶଃ ଶୋଚନୀୟ ହେବାକୁ ଆରମ୍ଭ କରିଥିଲା । ସେମାନଙ୍କ ଉପରେ ନାନା ପ୍ରକାର ଅଙ୍କୁଶ ପ୍ରୟୋଗ କରାଗଲା । ଫଳରେ ସେମାନଙ୍କ ସ୍ୱାଧୀନ ଓ ସ୍ୱତନ୍ତ୍ର ସତ୍ତା ଧୀରେ ଧୀରେ ଲୋପ ପାଇଆସିଲା । ସେମାନେ ରାଜକୀୟ ବିଳାସ ଓ ବୈଭବର ଅଂଶବିଶେଷ ହେବାକୁ ଲାଗିଲେ । ରାଜା ମହାରାଜାମାନେ ସୁନ୍ଦରୀ ଝିଅମାନଙ୍କୁ ନିଜ ରାଣୀହଂସପୁରର ମେଣ୍ଟାଳ ପିସ୍ କରି ରଖିବାକୁ ଲାଗିଲେ । 'ହାରେମ୍'କୁ ଯାଇପାରି ନଥିବା ଝିଅମାନେ 'କୋଠା'ର ଆଶ୍ରୟ ନେବାକୁ ଲାଗିଥିଲେ ।

ଷୋଡ଼ଶ ଶତାବ୍ଦୀର ଫରାସୀ ଲେଖକ ଏବିଦ୍ୟ ବ୍ରୋଁତୋମଂକ ''ଲାଇଫ୍ ହିଷ୍ଟ୍ରି ଅଫ୍ ଏଡଭେଞ୍ଚର୍ସ ୱିମେନ୍'ରୁ ଜଣାଯାଏ ଯେ ସେତେବେଳେ ଫ୍ରାନ୍ସରେ ବେଶ୍ୟା ଓ ନାରୀମାନଙ୍କୁ ଏକ ନୂଆ ଦୃଷ୍ଟିକୋଣ ନେଇ ଦେଖା ଯାଉଥିଲା । ଏଥିରେ ମଧ୍ୟଯୁଗୀୟ ପୁନର୍ଜାଗରଣର ପ୍ରଭାବ ଦେଖିବାକୁ ମିଳୁଥିଲା । ସେତେବେଳେ ଅନେକ ପତି ନିଜ ଘନିଷ୍ଠ ବନ୍ଧୁମାନଙ୍କ ମନୋରଞ୍ଜନ କରିବା ନିମନ୍ତେ ନିଜ ନିଜ ପତ୍ନୀମାନଙ୍କୁ ପେଶ୍ କରୁଥିଲେ । ଏହା ପଛରେ ସେମାନଙ୍କର ନାନା ରକମ ସ୍ୱାର୍ଥ  କାର୍ଯ୍ୟ କରୁଥିଲା । କେତେକ ଏମିତି ପୁରୁଷ ମଧ୍ୟ ଦେଖାଗଲେ ଯେଉଁମାନେ ଜାଣିଶୁଣି ଦୁରାଚାରୀ ସ୍ତ୍ରୀ ଓ ବେଶ୍ୟାମାନଙ୍କୁ ସ୍ୱେଚ୍ଛାରେ ବିବାହ କରୁଥିଲେ । ଇଟାଲି ଓ ସ୍ପେନରେ ମଧ୍ୟ ଏହା ପ୍ରଚଳିତ ଥିଲା । ଏହା ପଛରେ ''ନର୍କରୁ ଆଉ ଏକ ଖ୍ରୀଷ୍ଟିୟାନ ଆତ୍ମାକୁ ଉଦ୍ଧାର କରି ଈଶ୍ୱରଙ୍କ ଆଶୀର୍ବାଦ ପାଇବାର'' ଧାର୍ମିକ ବିଶ୍ୱାସ କାର୍ଯ୍ୟ କରୁଥିଲା ।

## କୋଠା, ହାରେମ୍, ମୁଜରା, ମେହଫିଲ ଓ ଘରାନା ସଂସ୍କୃତି :

ଏକାଦଶ ଶତାବ୍ଦୀରେ ଭାରତରେ 'କୋଠା' ଓ 'ହାରେମ୍'ର ପ୍ରଚଳନ ବିଶେଷ ପରିମାଣରେ ହେବାକୁ ଲାଗିଲା । ନିରଙ୍କୁଶ ରାଜା, ମହାରାଜା, ନବାବ, ସାମନ୍ତ, ଜମିଦାରମାନେ ନିଜ ନିଜ ମହଲରେ ସମ୍ଭ୍ରାନ୍ତ ଓ ସୁନ୍ଦର ଗଣିକାମାନଙ୍କୁ ରଖିବାକୁ ଲାଗିଲେ ।  'କୋଠା' ର ସାଧାରଣ ବେଶ୍ୟା କେବଳ ସମାଜର ମଧ୍ୟବିତ୍ତ ଶ୍ରେଣୀର ଭୋଗ୍ୟସାମଗ୍ରୀ ହୋଇ ରହିଲା ।

ଏହି 'ହାରେମ୍' ଓ 'କୋଠା' ସଂଘର୍ଷରୁ ମୁଜରା ଓ ମେହଫିଲ୍ ସଂସ୍କୃତିର ଅୟମାରମ୍ଭ ହୋଇଥିଲା । ଧନୀ ସାମନ୍ତମାନେ ନିଜ ହାରେମ୍ ଭିତରେ ଆବଦ୍ଧ ହୋଇଯିବା ଫଳରେ ସାଧାରଣ



Digitized by srujanika@gmail.com

'କୋଠା' ମାନଙ୍କରେ ଧନୀ ଗରାଖମାନଙ୍କ ଅଭାବ ଘଟିଲା । କୋଠାର ଆୟ କମିଗଲା । ଫଳରେ ଅଧିକ ଉପାର୍ଜନ କରିବା ନିମନ୍ତେ କୋଠାର ବେଶ୍ୟାମାନେ ପ୍ରତ୍ୟକ୍ଷତଃ ବାହାରକୁ ଆସିବାକୁ ଚାହିଁଲେ । ସେଥିଲାଗି କିଛି ସ୍ୱତନ୍ତ୍ର ଆକର୍ଷଣର ଆବଶ୍ୟକତା ରହିଥିଲା । ଏହି ଆକର୍ଷଣ ଥିଲା ଗୀତ ଓ ନୃତ୍ୟର ଆକର୍ଷଣ । ଏହା ଫଳରେ ମୁଜରା ଓ ମେହଫିଲର ଆବିର୍ଭାବ ଘଟିଲା । ଯେଉଁମାନେ ନିଜର ସ୍ୱତନ୍ତ୍ର ସଙ୍ଗୀତ ଶୈଳୀରେ ଆବଦ୍ଧ ହୋଇ ତା'ର ବିକାଶ କରିବାକୁ ଚାହିଁଲେ ସେମାନେ ବିଭିନ୍ନ ସଙ୍ଗୀତ ଘରାନା ବା ପରିବାର ଭାବରେ ପରିଚିତ ହେଲେ । ପରବର୍ତ୍ତୀ କାଳରେ ଏହି ଘରାନାମାନେ ଭାରତୀୟ ମାର୍ଗ ବା ଶାସ୍ତ୍ରୀୟ ସଙ୍ଗୀତକୁ ବହୁଳ ଭାବରେ ସମୃଦ୍ଧ କରିଛନ୍ତି ।

ଐତିହାସିକ ଦୃଷ୍ଟିକୋଣରୁ ବିଚାର କଲେ ଏହି କାଳ ଥିଲା ଯୁଦ୍ଧ ସଂତ୍ରସ୍ତ କାଳ । ଲୋକେ ଯୁଦ୍ଧରେ ପରିଶ୍ରାନ୍ତ ହୋଇ ସାରିଥିଲେ । ମନ୍ଦିର, ମସ୍‌ଜିଦ୍ ଭିତରେ ଶାନ୍ତି ଖୋଜୁଥିଲେ । ଚାରିଆଡ଼େ ଭକ୍ତିରସର ବାତାବରଣ ରହିଥିଲା । ଗଣିକାମାନେ ସେତେବେଳେ ମେହଫିଲରେ ଦାଦରା, ଠୁମରୀ, ଖୟାଲ, ଟପ୍‌ପା, ଗଜଲ, କଓ୍ୱାଲୀ, ହୋଲି, କଜରୀ, ପୂରବୀ ସହିତ ଭଜନ ଆଦି ମଧ୍ୟ ଗାଇବାକୁ ଲାଗିଲେ । ଏତିକିବେଳେ କଥକ ନୃତ୍ୟ ମଧ୍ୟ ଏମାନଙ୍କ ସହଯୋଗରେ ଯଥେଷ୍ଟ ସମ୍ମାନିତ ଆସନ ପାଇପାରିଲା ।

## ମୋଗଲ ଯୁଗରେ କୋଠା ସଂସ୍କୃତି :

ମୋଗଲ ଯୁଗରେ କୋଠା ସଂସ୍କୃତିର ଅନେକ ଉତ୍‌ଥାନ-ପତନ ଘଟିଥିଲା । ଆକବରଙ୍କ ଦରବାରର ନର୍ତ୍ତକୀ ଅନାରକଲୀ ମଧ୍ୟ ଜଣେ ଗଣିକା ଥିଲେ, ଯାହାଙ୍କ ଲାଗି ସଲିମ୍ ଆକବର, ତାଙ୍କ ପିତାଙ୍କ ବିରୁଦ୍ଧରେ ବିଦ୍ରୋହ, ଏପରିକି ଯୁଦ୍ଧ କରିବାକୁ ମଧ୍ୟ ପଛେଇ ନ ଥିଲେ । ମୋଗଲ କାଳରେ ଫୈଜୀ ବେଗମ୍, ନୂରବାଈ, ରହେମାନ ବାଈ, ପନ୍ନାବାଈ, କମଳାବାଈ, ଲାଲ କୁଅଁର, ଗୌହରଜାନ୍, ହୁସ୍ନାବାଈ, ରସୁଲନ୍ ବାଈ, ସିଦ୍ଧେଶ୍ୱରୀ ବାଈ, ମୁନ୍ନାଜାନ୍ ଆଦି ବହୁ ସୁନାମ ଅର୍ଜନ କରିଛନ୍ତି । ଏହି କୋଠା ସଂସ୍କୃତିର ସର୍ବଶେଷ ଓ ଯଶସ୍ୱୀ ବାଈ ଥିଲେ ଉମରାଓ ଜାନ୍ ଅଦା ।

ସେତେବେଳେ ଅନ୍ୟୁନ ଦଶଲକ୍ଷ ପରିବାର ଏହି ବୃତ୍ତିଦ୍ୱାରା ପରିବାର ଭରଣପୋଷଣ କରୁଥିଲେ । ଏହି ସଂଖ୍ୟାଗରିଷ୍ଠତା ମୂଳରେ ଥିଲା ଆଲେକଜାଣ୍ଡରଙ୍କ ଭାରତ ଆକ୍ରମଣ ।

ଆଲେକଜାଣ୍ଡରଙ୍କ ସୈନିକମାନେ ଯେଉଁଆଡ଼େ ଯାଇଥିଲେ ସ୍ତ୍ରୀମାନଙ୍କ ଉପରେ ଅକଥନୀୟ ଅତ୍ୟାଚାର କରିଥିଲେ । ସେମାନେ କେତେକ ସୁନ୍ଦରୀ ଝିଅମାନଙ୍କୁ ମଧ୍ୟ ସାଙ୍ଗରେ ନେଇ ଯାଇଥିଲେ । ଯେଉଁ ଅତ୍ୟାଚାରିତା ସ୍ତ୍ରୀମାନେ ଭାରତରେ ରହିଗଲେ, ସେମାନେ ନିଜର ସାମାଜିକ ସ୍ୱୀକୃତି ହରାଇ କୋଠାର ଆଶ୍ରୟ ନେବାକୁ ବାଧ୍ୟ ହୋଇଥିଲେ । କେତେକ ଆତ୍ମହତ୍ୟା କରିଥିଲେ । ପ୍ରଥମ ବିଶ୍ୱଯୁଦ୍ଧ, ଦ୍ୱିତୀୟ ବିଶ୍ୱଯୁଦ୍ଧ, ଭାରତ ବିଭାଜନ, ବଙ୍ଗଳାଦେଶ ଯୁଦ୍ଧ, ପଞ୍ଜାବ କାଶ୍ମୀରର ଆତଙ୍କବାଦୀ ଗତିବିଧି, ଶ୍ରୀଲଙ୍କା ଯୁଦ୍ଧବେଳେ ମଧ୍ୟ ଦେଶରେ ଗଣିକାଙ୍କ ବନ୍ୟା



Digitized by srujanika@gmail.com

ଆସିଥିଲା । ଯୁଦ୍ଧ ପରେପରେ ପୃଥିବୀର ପ୍ରତ୍ୟେକ ଦେଶରେ ଏଭଳି ଅବସ୍ଥା ଘଟିଛି । ବେଶ୍ୟାମାନଙ୍କ ବନ୍ୟାର ଆଉ ଏକ କାରଣ ଥିଲା ଆଓରଙ୍ଗଜେବଙ୍କ ପ୍ରଶାସନ । ସେ ସିଂହାସନ ଆରୋହଣ କଲା ମାତ୍ରକେ ନିଜର ହାରେମ୍ ଖାଲି କରି ଦେଇଥିଲେ । ସେ ଥିଲେ ବିଳାସିତାର ବିରୋଧୀ । ନିଜ ହାରେମ୍ ଖାଲି କରି ନିଜର ମନ୍ତ୍ରୀ, ସେନାପତି, ନବାବ୍, ସୁବାଦାରମାନଙ୍କୁ ମଧ୍ୟ ସେମାନଙ୍କ ହାରେମ୍ ସବୁ ଖାଲି କରିଦେବା ଲାଗି କଠୋର ଆଦେଶ ପ୍ରଦାନ କରିଥିଲେ । ଏ ଆଦେଶ କାର୍ଯ୍ୟକାରୀ କରିବା ଥିଲା ବାଧ୍ୟତାମୂଳକ ।

ହାରେମ୍‌କୁ ହାରେମ୍ ଖାଲି ହୋଇଗଲା । ଅନ୍ତେବାସିନୀମାନେ ବିଳାସବ୍ୟସନର ଆବଦ୍ଧ ସ୍ୱର୍ଗରୁ ପେଟପାଟଣାର ରାସ୍ତାକଡ଼କୁ ଓହ୍ଲାଇ ଆସିଲେ । ସବୁ ବିଭବ ହାରେମ୍ ଭିତରେ ରହିଗଲା । ପାଖରେ ଶୂନ୍ୟତା ଓ ସାମ୍ନାରେ ଜୀବନ୍ତ ଜୀବନ ସଂଗ୍ରାମର ଅସରନ୍ତି ପଥ । ବିତାଡ଼ିତା ସ୍ତ୍ରୀମାନଙ୍କ ମଧ୍ୟରୁ ଅନେକେ ଅଳ୍ପ ବୟସରୁ ଅଣାଯାଇଥିବାରୁ ସେମାନଙ୍କ ପିତାମାତା, ଗାଁ ଘର ଠିକଣା ମଧ୍ୟ ସେମାନଙ୍କୁ ଜଣା ନଥିଲା । ଅନେକ ଅନ୍ତେବାସିନୀ ପରିବାର, ସମାଜ ଦ୍ୱାରା ପ୍ରତ୍ୟାଖ୍ୟାତ ହେଲେ ।

ସେମାନଙ୍କ ମଧ୍ୟରୁ ଯେଉଁମାନେ କୋଠାରୁ ଆସିଥିଲେ ସେମାନେ ନିଜ ନିଜ ପୁରୁଣା କୋଠାକୁ ଫେରିଗଲେ । ଆଉ କେତେକ ନିରାଶ୍ରିତା ସବୁଆଡୁ ନିରାଶ ହୋଇ ବଞ୍ଚି ରହିବା ଲାଗି ନୂଆ କୋଠାମାନ ଗଢ଼ିଲେ ।

ସେମାନଙ୍କ ସ୍ୱୈରାଚାରିତା ବଢ଼ିଗଲା । ହାରେମ୍‌ର ବନ୍ଦୀ ଜୀବନରେ ସେମାନେ ନିଜ ନିଜ ମାଲିକମାନଙ୍କ ଛଡ଼ା ଅନ୍ୟ କୌଣସି ପୁରୁଷର ଛାୟା ମଧ୍ୟ ଦେଖିବାର ସୁଯୋଗ ପାଇ ନ ଥିଲେ । ହାରେମ୍‌ର ପ୍ରହରୀ ଭାବେ ହିଞ୍ଜଡ଼ାମାନଙ୍କୁ ନିଯୁକ୍ତି ଦିଆ ଯାଇଥିଲା । ତେଣୁ ଏ ମୁକ୍ତିର ନିଶା ସେମାନଙ୍କୁ ଏକରକମ ପାଗଳ କରିଦେଲା । ପୁଣି ନିରାପତ୍ତା ଓ ବଞ୍ଚିବାର ପ୍ରଶ୍ନ ମଧ୍ୟ ରହିଥିଲା । ତେଣୁ ସେମାନେ ବାଡ଼ବତା ଛୋଟ ବଡ଼ ବିଚାର ନ କରି ସମସ୍ତଙ୍କ ସହ ଦେହ ବେପାରରେ ଲିପ୍ତ ହେଲେ । ସେମାନଙ୍କ ଧନ୍ଦା ଛୋଟ ଜାଗିରଦାରେ ଓ ମଧ୍ୟବିତ୍ତ ବ୍ୟବସାୟୀଙ୍କ ମଧ୍ୟରେ ସମୃଦ୍ଧ ହେବାକୁ ଲାଗିଲା ।

ତେବେ ଯେଉଁମାନେ ନୃତ୍ୟ, ସଙ୍ଗୀତ ବିଶାରଦ ଥିଲେ, ସେଭଳି ଗଣିକାମାନଙ୍କ ଅବସ୍ଥା କିଛିଟା ଭଲ ରହିଲା । ହେଲେ ଯେଉଁମାନଙ୍କ ପାଖରେ ଏସବୁ କଳା କିଛି ନ ଥିଲା, ସେମାନଙ୍କ କୋଠା ମଦ, ଜୁଆ ଓ ନାନା ଅସାମାଜିକ କାର୍ଯ୍ୟର ଆଡ୍‌ଡ଼ାରେ ପରିଣତ ହେଲା । ଆଓରଙ୍ଗଜେବଙ୍କ ପତନ ପରେ ବେଶ୍ୟା ସଂସ୍କୃତି ପୁଣି ଅବାଧ ଭାବରେ ବୃଦ୍ଧି ପାଇବାକୁ ଲାଗିଲା ।



Digitized by srujanika@gmail.com

## ବ୍ରିଟିଶ କାଳରେ ବେଶ୍ୟାବୃତ୍ତି :

ଇଂରେଜଙ୍କ ଆଗମନ କାଳରେ ଦେହ-ବେପାରଟା ସାମାନ୍ୟ ବାଧାପ୍ରାପ୍ତ ହୋଇଥିଲା ଏକଥା ସତ କିନ୍ତୁ ସେଇଟା ସେତେ ବେଶି ନ ଥିଲା । ପରେ ଇଂରେଜ ପ୍ରଶାସନ ଚିନ୍ତା କଲା ଯେ ବେଶ୍ୟାବୃତ୍ତି ସେମାନଙ୍କ ପ୍ରଶାସନ ଲାଗି ଅନେକ ସହାୟକ ହୋଇପାରିବ · ·ାମାନଙ୍କ ଉପସ୍ଥିତି ରାଜା, ନବାବମାନଙ୍କୁ ବିଳାସବ୍ୟସନ ମଧ୍ୟରେ ବୁଡ଼ାଇ ରଖିବ ଓ ସେମାନଙ୍କ ପ୍ରଶାସନର ପଥ ସୁଗମ ହେବ ।

ଇଂରେଜ ଅଧିକାରୀମାନେ ନିଜ ସୈନିକ, କର୍ମଚାରୀମାନଙ୍କ ଲାଗି କେତେକ କୋଠା ସଂରକ୍ଷିତ କରି ରଖିଲେ । ଇଂରେଜ ଅଧିକାରୀ, ରାଜବଂଶର ପ୍ରତିନିଧି ଓ ଶିକ୍ଷିତ ସଂଭ୍ରାନ୍ତ ବ୍ୟକ୍ତିମାନେ ନିଜର ମାନ ମର୍ଯ୍ୟାଦା ଦୃଷ୍ଟିରୁ ପ୍ରକାଶ୍ୟରେ କୋଠାକୁ ଯିବା ପରିବର୍ତ୍ତେ ନିଜ ଘର, ବିଶ୍ରାମାଗାର, ପ୍ରମୋଦ ବନ ଆଦିକୁ ସୁନ୍ଦର ଝିଅମାନଙ୍କୁ ଡକାଇବାକୁ ଲାଗିଲେ । ଏହା ଜଣେ ମଧ୍ୟସ୍ଥ ବା ବିଶ୍ୱସ୍ତ ସହାୟକ ମାଧ୍ୟମରେ ହେଉଥିଲା । ଆଧୁନିକ ଭାରତରେ ଏହି ସମୟରୁ ହିଁ କଲଗାର୍ଲ ପ୍ରଥାର ଆରମ୍ଭ ।

ଅନେକ କ୍ଷେତ୍ରରେ ଇଂରେଜ ପ୍ରଶାସକ ମୋଟା ଅର୍ଥ ଦେଇ ନିଜ ଦେଶରୁ ଗୋରା ଝିଅମାନଙ୍କୁ ଅଣାଇ ରାଜା, ନବାବ୍‌ମାନଙ୍କୁ ହାରେମ୍‌କୁ କୌଶଳରେ ପଠାଇ ଦେଉଥିଲେ । ସେମାନେ ରାଜା, ନବାବମାନଙ୍କୁ ବିଳାସ ବ୍ୟସନରେ ବୁଡ଼ାଇ ସେମାନଙ୍କୁ ନିଷ୍କ୍ରିୟ କରିଦେବା ସାଙ୍ଗକୁ ଗୁପ୍ତଚର ବୃତ୍ତି କରି ଇଂରେଜ ଅଧିକାରୀମାନଙ୍କୁ ଗୁପ୍ତ ତଥ୍ୟମାନ ଯୋଗାଉଥିଲେ । ସେମାନଙ୍କ ମାଧ୍ୟମରେ ହାରେମ୍ ସବୁ ରାଜନୈତିକ ଷଡ଼ଯନ୍ତ୍ରର କେନ୍ଦ୍ର ହୋଇ ଉଠିଥିଲା ।

ବିଭିନ୍ନ ସରକାରୀ କାର୍ଯ୍ୟାଳୟରେ ପଦ ମର୍ଯ୍ୟାଦା ବୃଦ୍ଧି, ପଦୋନ୍ନତି ଓ ଅନ୍ୟାନ୍ୟ ରକମର ଲାଭ ହାସଲ କରିବା ନିମନ୍ତେ ପତ୍ନୀମାନଙ୍କୁ ଦେହ ବେପାରରେ ନିୟୋଜିତ କରିବା ପ୍ରଥାଟି ଭାରତକୁ ଇଷ୍ଟ ଇଣ୍ଡିଆ କମ୍ପାନୀ ଶାସନର ଅବଦାନ । ଏହା ବିଭିନ୍ନ ରୂପରେ ଏବେ ମଧ୍ୟ ସରକାରୀ ଅଫିସ, କମ୍ପାନୀ, ବ୍ୟବସାୟିକ ସଂସ୍ଥା ଆଦିରେ ରହିଛି ନାନା ରୂପରେ ।

ସେତେବେଳେ ରାଜା, ମହାରାଜାମାନେ ଥିଲେ ବେଶ୍ୟାମାନଙ୍କ ଜନକ । ୧୯୧୦-୧୯୨୦ ମସିହା ପର୍ଯ୍ୟନ୍ତ ଏହା ଜୋର୍‌ରେ ଚାଲିଥିଲା । ରାଜା, ମହାରାଜାମାନେ ହିଁ ଥିଲେ ନିଜ ନିଜ ରାଜ୍ୟରେ ବେଶ୍ୟା ସୃଷ୍ଟି କରିବାର ମୁଖ୍ୟ କାରଣ । ତା' ତଳକୁ ଥିଲେ ଶ୍ରେଷ୍ଠୀ ଓ ସମ୍ଭ୍ରାନ୍ତ ଶ୍ରେଣୀ । ରାଜ୍ୟରେ ସୁନ୍ଦରୀ ଝିଅଟିଏ ଜନ୍ମ ହେଲା ମାତ୍ରକେ ସେମାନଙ୍କ ଦୃଷ୍ଟି ପଡୁଥିଲା । ସେ ବଡ଼ ହେଲାପରେ ତାଙ୍କୁ ସେମାନଙ୍କ ଭୋଗସାମଗ୍ରୀରେ ପରିଣତ କରାଯାଉଥିଲା । ଝିଅର ଇଚ୍ଛା-ଅନିଚ୍ଛାର କୌଣସି ପ୍ରଶ୍ନ ଉଠୁ ନ ଥିଲା । ଏମାନଙ୍କ ଔରସରୁ ଜାତ କନ୍ୟାର ନିୟତି ବେଶ୍ୟାବୃତ୍ତି ଓ ପିଲାର ଭାଗ୍ୟ ଅସାମାଜିକତା ଭିନ୍ନ କିଛି ନ ଥିଲା ।



Digitized by srujanika@gmail.com

ଅନେକ ରାଜାଙ୍କ ରାଣୀହଂସପୁରରେ ନାରୀମାନଙ୍କ ସଂଖ୍ୟା ଥିଲା ତିନିଶତାଧିକ । ରାଜ୍ୟ ବା ରାଜାଙ୍କ ଡାକ୍ତର ଇଂରାଜୀ ବର୍ଣ୍ଣମାଳା ଅନୁକ୍ରମରେ ସେମାନଙ୍କ ତାଲିକା କରି ରଖୁଥିଲେ । ମହାରାଣୀମାନଙ୍କ ନାମ A,B, C, D କ୍ରମରେ ରଖା ଯାଉଥିଲାବେଳେ ଛୋଟକାଟିଆ ରକ୍ଷିତା ବା ବେଶ୍ୟାମାନଙ୍କ ନାମ ଅଙ୍କ ଅନୁସାରେ ରଖା ଯାଉଥିଲା, ନମ୍ବର ୧, ୨, ୩, ୪, ୫, ୬, ୭, ୮, ଆଦି । ଅନ୍ୟାନ୍ୟ ପରିଚାରିକାମାନଙ୍କ ନାମ, AA, BB, CC, ଆଦି କ୍ରମରେ ରଖାଯାଉଥିଲା । ଏଭଳି ତାଲିକାର ଏକ କିତା ଡାକ୍ତରଙ୍କ ପାଖରେ ଓ ଅନ୍ୟ ଏକ କିତା ରାଜାମାନଙ୍କ ପାଖରେ ରହୁଥିଲା । ମହାରାଜ ନିଜ ଶୟନାଗାର ବା ଅନ୍ୟ ବ୍ୟକ୍ତିଗତ ରୁମ୍‌ରେ ତାଲିକାକୁ ତାଲା ଦେଇ ରଖୁଥିଲେ । ରାଜା ଓ ଡାକ୍ତରଙ୍କ ଛଡ଼ା ଅନ୍ୟ କେହି ଏ କୋର୍ଡ଼ ଶବ୍ଦ ବୁଝିପାରୁ ନଥିଲେ । କୌଣସି ନାରୀ ଅସୁସ୍ଥ ହେଲେ ଡାକ୍ତର ରାଜାଙ୍କୁ ଏହି କୋର୍ଡ଼ ନମ୍ବର ମାଧ୍ୟମରେ ଜଣାଉଥିଲେ ଓ ରାଜା ତାହା ବୁଝିପାରୁଥିଲେ । ହାରେମ୍‌ର ନାରୀମାନେ ଥିଲେ ଭଦ୍ର, ଶିଷ୍ଟ, ଶିକ୍ଷିତ, ସୁ-ସଂସ୍କୃତ ଓ ବ୍ୟବହାର କୁଶଳ । ତେଣୁ ରାଜପୁତ୍ର ଓ ଧନୀକ ପୁତ୍ରମାନଙ୍କୁ ବ୍ୟବହାର ଓ ଶିଷ୍ଟାଚାର ଶିକ୍ଷା ନିମନ୍ତେ ଗଣିକା ଗୃହକୁ ପଠାଯାଉଥିଲା । ହେଲେ ଧୀରେ ଧୀରେ ଏହି ହାରେମ୍ ଓ କୋଠାଗୁଡ଼ିକରେ ସଂସ୍କୃତି ଗୌଣ ହୋଇ ଯୌନ ବା ସେକ୍‌ସର ପ୍ରାଧାନ୍ୟ ବୃଦ୍ଧି ପାଇବାରେ ଲାଗିଲା । ହାରେମ୍ ସବୁ ସ୍ୱାଧୀନତା ପର୍ଯ୍ୟନ୍ତ କୌଣସି ପ୍ରକାରେ ତିଷ୍ଠି ରହିଥିଲା ।

## ସ୍ୱାଧୀନୋତ୍ତର ଭାରତ ଓ ବେଶ୍ୟାବୃତ୍ତି :

ସ୍ୱାଧୀନତା ପରେ ଭାରତରେ ଆଇନତଃ ବେଶ୍ୟାବୃତ୍ତିକୁ ବନ୍ଦ କରି ଦିଆଗଲା । ହେଲେ ରାଜନୈତିକ ଉତ୍‌ଥାନ-ପତନ, ଭ୍ରଷ୍ଟାଚାର, ବିଫଳ ଅର୍ଥନୀତି, ନିଷ୍କ୍ରିୟ ନ୍ୟାୟ, ପ୍ରବଞ୍ଚିତ ପ୍ରଶାସନ, ଦରଦାମ ବୃଦ୍ଧି, ବେକାରୀ, ମୁଦ୍ରାସ୍ଫୀତି, ଅଭାବ ଅନଟନ, ପ୍ରାକୃତିକ ବିପର୍ଯ୍ୟୟ, ନାରୀ ନିର୍ଯାତନା, ଯୌତୁକ, ଅତ୍ୟାଧୁନିକ ଫେସନ, ବିଦେଶୀ ପଦାର୍ଥର ମୋହ, କିଛି ପରିମାଣରେ ଅବାଧ ଯୌନାଚାରର ସଉକ, ଧନ ଓ ସତ୍ତା ଲୋଲୁପତା, ନକଲି ସାମାଜିକ ପ୍ରତିଷ୍ଠା, ଈର୍ଷା, ପରଶ୍ରୀକାତରତା, ପାରିବାରିକ-ସାମାଜିକ ଅତ୍ୟାଚାର, ବିଦେଶୀ ସଭ୍ୟତା ପ୍ରତି ମୋହ, ଭାରତୀୟତା ପ୍ରତି ହୀନମନ୍ୟତା, ହିପ୍‌ପୀବାଦ, ବିଦେଶୀ ଚଳଚ୍ଚିତ୍ର, ବ୍ଲୁ ଫିଲ୍‌ମ, ଅଶ୍ଳୀଳ ବହି, ଶିକ୍ଷା ଓ ଯୌନ ଶିକ୍ଷାର ଅଭାବ, ଗଣ ମାଧ୍ୟମର ନଗ୍ନ ଅଶ୍ଳୀଳ ବିଜ୍ଞାପନ, 'ଏ' ମାର୍କା ଫିଲ୍‌ମ, ଗର୍ଭ ନିରୋଧକ ଔଷଧ ଓ ଗର୍ଭପାତର ସହଜ ବ୍ୟବସ୍ଥା, କାମୁକତା, ପୌରୁଷର ଆସ୍ଫାଳନ, ଯୌନାଚାର ପ୍ରତି ସାମାଜିକ ବର୍ଜନା, ବିଫଳ ବିବାହ, ପୁରୁଷ ପ୍ରାଧାନ୍ୟ ସାମାଜିକତା, ଜାତିବାଦୀ ବ୍ୟବସ୍ଥା, ନାରୀ ପ୍ରତି ଉପେକ୍ଷାଭାବ, ସମ୍ବେଦନଶୂନ୍ୟତା, ଶିଳ୍ପାୟନ, ସହରୀକରଣ, ଦ୍ରୁତ ସଞ୍ଚାର ବ୍ୟବସ୍ଥା, ମନୋବୈଜ୍ଞାନିକ ଓ ସାମାଜିକ ପୁନର୍ଥଇଥାନର ଅଭାବ, ଦୋଷୀ ପୁରୁଷକୁ ଦଣ୍ଡିତ କରା ନ ଯିବା, ଜଟିଳ ଆଇନ ବ୍ୟବସ୍ଥା, ମାତାପିତା, ସଂରକ୍ଷକ ବା ପତିର ମୃତ୍ୟୁ, ନିରାଶା, ଉଦାସୀନତା, ଦାରିଦ୍ର୍ୟ, ମାତାପିତା ସଂରକ୍ଷକ ଆଦିଙ୍କ ଉପେକ୍ଷା, ଅଶାଳୀନ ବ୍ୟବହାର,



Digitized by srujanika@gmail.com

ଅସନ୍ତୁଷ୍ଟ ପାରିବାରିକ ସମ୍ପର୍କ, ଇଚ୍ଛା ବିରୁଦ୍ଧ, ବିବାହ, ପ୍ରେମରେ ପ୍ରବଂଚନା, ଚଳିଚ୍ଚିତ୍ର ଅଭିନେତ୍ରୀ ହେବାର ମୋହ, ଲମ୍ପଟ ପତି, ରକ୍ଷିତା ସ୍ତ୍ରୀର ଉପସ୍ଥିତି, ମାଆବାପା ଭାଇଭଉଣୀଙ୍କ ସୁଖ ସୁବିଧା କାମନା, ସମ୍ପର୍କୀୟମାନଙ୍କ ଉସକାଣ, ସଙ୍ଗଦୋଷ, ଅପହରଣ, ଧର୍ଷଣ, ପାରଂପରିକ ବେଶ୍ୟାବୃତ୍ତି, ବାତାବରଣର ପ୍ରଭାବ, ଅବୈଧ ଯୌନ ସଂପର୍କ, ପାପଗର୍ଭ, ବେଶ୍ୟାବୃତ୍ତି ପ୍ରତି ରୋମାଞ୍ଚ, ଦୁଃସାହସିକତା, ବିବାହ ପ୍ରତି ଘୃଣା, ନିକୃଷ୍ଟ ନୈତିକ ମୂଲ୍ୟବୋଧ, ପ୍ରତିଶୋଧ ପରାୟଣ ଆତ୍ମପୀଡ଼ନ, ବସ୍ତୁସ୍ଥିତିର ଅନଭିଜ୍ଞତା ଆଦି ବହୁ କାରଣ ବେଶ୍ୟାବୃତ୍ତି ଲାଗି ସ୍ତ୍ରୀ ପାଇଁ ଅବାଧ ଦ୍ୱାର ମୁକ୍ତ କରିଦେଇଛି । ମଦ, ଦଲାଲ, ଟଙ୍କା ଏହାକୁ ସମୀଧ ଯୋଗାଇଛି । କୋଠା, ବାଜାର, ବଦନାମ ବସ୍ତି, ବଦନାମ ଗଳି, ଶିଳ୍ପାୟନ ଜନିତ ବିଚ୍ଛିନ୍ନତା ଓ ନିଃସଙ୍ଗବୋଧ, ସଂପର୍କର ଖଣ୍ଡିତ ଗରିମା ମଧ୍ୟ ଦେହ– ବେପାରକୁ ଉତ୍ସାହିତ କରୁଛି । ବିଉଟି ପାର୍ଲର, ସେଲୁନ୍, ହୋଟେଲ, ପର୍ଯ୍ୟଟନ ସ୍ଥଳ ଆଦି ଏହାର ଆଡ୍‌ଡା ହୋଇଛି । ବିଭିନ୍ନ ସାମାଜିକ ଓ ସାଂସ୍କୃତିକ ସଂସ୍ଥା, ନୃତ୍ୟ ସଂଗୀତ ଅନୁଷ୍ଠାନର ଆଢୁଆଳରେ ମଧ୍ୟ ବେଶ୍ୟାବୃତ୍ତିର ଫସଲ ଉଧାଏ । ସମାଜର ବଡ଼ପଣ୍ଡା, ସମ୍ଭ୍ରାନ୍ତ ଲୋକ, ନେତା, ରାଜନୀତିକ, ପୋଲିସ, ଚୋରାବେପାରୀ, ଅଫିସରମାନଙ୍କ ପ୍ରଚ୍ଛନ୍ନ ହାତ ମଧ୍ୟ ଏ ଧନ୍ଦା ପଛରେ ରହିଥାଏ । କେବରେର କଳା– ସଂସାର ମଧ୍ୟ ବେଶ୍ୟାବୃତ୍ତିର ସଂସାର । ସେହିପରି କଳାହାଣ୍ଡି, ବଲାଙ୍ଗୀର ଆଦି ଚିର ମରୁଡ଼ି ପ୍ରପୀଡ଼ିତ ଅଞ୍ଚଳର ଅନାହାର ଝିଅ ବିକ୍ରି ବେପାରକୁ ବହୁତାୟତ କରିଥାଏ ।

ବିଖ୍ୟାତ ପାକିସ୍ଥାନୀ ସଂବାଦପତ୍ର ''ଡନ୍'' ଜୁଲାଇ ୬, ୧୯୬୧ ଦିନ ରାଜସ୍ଥାନରେ ବ୍ୟାପକ ଝିଅବିକ୍ରିର ଏକ ଚାଞ୍ଚଲ୍ୟକର ସମ୍ବାଦ ଶିରୋନାମାରେ ପ୍ରକାଶ କରିଥିଲା । ଏ ଘଟଣାରେ ଉଦ୍‌କ୍ଷିପ୍ତ ତତ୍‌କାଳୀନ ପ୍ରଧାନମନ୍ତ୍ରୀ ନେହେରୁ ରାଜସ୍ଥାନ ସରକାରକୁ ଏକ ରିପୋର୍ଟ ମାଗିଥିଲେ । ଅନୁସଂଧାନ ପରେ ସେଠାରେ ଝିଅମାନଙ୍କ ଅବାଧ ବିକ୍ରି ବ୍ୟାପକ ଭାବରେ ଚାଲିଥିବା ଘଟଣା ସତ ଓ ଏଥିରେ କେତେକ ବରିଷ୍ଠ ରାଜନୈତିକ ବ୍ୟକ୍ତି ସଂପୃକ୍ତ ଥିବା ରିପୋର୍ଟଟି ରାଜ୍ୟ ପ୍ରଶାସନ କେନ୍ଦ୍ର ସରକାରକୁ ପଠାଇଦେଲା । ସେଇଟା ପ୍ରକାଶ ପାଇଥିଲେ ଅନେକ ବରିଷ୍ଠ ନେତାଙ୍କ ମୁଖା ଖୋଲି ଯାଇଥାନ୍ତା ଓ ରାଜ୍ୟର ଶାସକ ଦଳର ଚରିତ୍ରସଂହାର ହୋଇଯାଇଥାନ୍ତା । ତେଣୁ ଗଭୀରତା ସହକାରେ ରିପୋର୍ଟଟି ଚାପି ଦିଆଯାଇଥିଲା । ସଂପ୍ରତି ମଧ୍ୟ ସମ୍ବାଦପତ୍ରର ପୃଷ୍ଠା ନେତା, ମନ୍ତ୍ରୀ, ବିଧାୟକମାନଙ୍କର ନୈତିକ ପତନର ଇତିହାସରେ ପରିପୂର୍ଣ୍ଣ ।

ଏକ ପରିସଂଖ୍ୟାନ ଅନୁସାରେ ବେଶ୍ୟାବୃତ୍ତିରେ କମ୍ୟୁନିଷ୍ଟ ଶାସିତ ପଶ୍ଚିମବଙ୍ଗ ଭାରତରେ ପ୍ରଥମ ସ୍ଥାନ ଅଧିକାର କରିଛି । ସମଗ୍ର ଭାରତରେ ଏହା ହେଉଛି ଶତକଡ଼ା ଅଡ଼ତାଳିଶ ଭାଗ । ତା' ପରକୁ ମହାରାଷ୍ଟ୍ର (ମୁଖ୍ୟତଃ ବମ୍ବେ, ପୁନା), ଉତ୍ତର ପ୍ରଦେଶ, ବିହାର, ମଧ୍ୟପ୍ରଦେଶର ସ୍ଥାନ । ପଞ୍ଜାବ ଭଳି ସମୃଦ୍ଧ ରାଜ୍ୟ ମଧ୍ୟ ଏହାର ବ୍ୟତିକ୍ରମ ନୁହେଁ ।



Digitized by srujanika@gmail.com

ଭାରତର ସବୁ ରାଜ୍ୟରେ, ସବୁ ଧର୍ମରେ, ସବୁ ସମାଜରେ, ସବୁ ଜାତିରେ ଦେହ ବେପାର ବିସ୍ତୃତ ଓ ବିହୁରୂପରେ ଚାଲିଛି । ତେବେ ସମାଜରେ ଅତ୍ୟନ୍ତ ସମୃଦ୍ଧ ଓ ଅତ୍ୟନ୍ତ ଦରିଦ୍ର ଶ୍ରେଣୀରେ ଏହାର ମାତ୍ରା ବେଶି । ମଧ୍ୟବିତ୍ତ ସମାଜରେ ଏହାର ପ୍ରାବଲ୍ୟ ନାହିଁ । କେବରେ, ଡିସ୍କୋ ସୋସାଇଟି, କ୍ଲବ, ଗେଷ୍ଟ ହାଉସ୍, କଳା କେନ୍ଦ୍ର, ସମାଜ କେନ୍ଦ୍ର, ହଲିଡେ ହୋମ୍, ଡାକ ବଙ୍ଗଲୋ, ସର୍କିଟ ହାଉସ୍, ହୋଟେଲ ଆଦି ଆଧୁନିକ 'କୋଠା' ରୂପେ ମୁଣ୍ଡ ଟେକି ଉଠିଛି ।

**ବେଶ୍ୟାବୃତ୍ତିର ଇତିହାସ ବନାମ ବିଶ୍ୱର ଇତିହାସ :**

ବେଶ୍ୟାବୃତ୍ତିର ଇତିହାସ ହେଉଛି ପ୍ରକୃତରେ ବିଶ୍ୱର ଇତିହାସ । ପୁରୋହିତଗିରୀକୁ ଛାଡ଼ି ଦେଲେ ଏହା ପୃଥିବୀର ସର୍ବପ୍ରାଚୀନ ବେପାର, ଯାହା ବିଶ୍ୱର ସବୁ ଦେଶରେ ଆଦିମ କାଳରୁ ପଲ୍ଲବିତ । ହେରୋଡୋଟସଙ୍କ ଏକ ଆଲେଖରୁ ଜଣାପଡ଼େ ଯେ ପ୍ରାଚୀନ ମିଶରର ଜନୈକ ରାଜା ଗୋଟାଏ ଚୋରକୁ ଧରିବା ଲାଗି ନିଜ ଝିଅକୁ ନିୟୋଜିତ କରିଥିଲେ । ଖ୍ରୀଷ୍ଟପୂର୍ବ ୩୦୫୦ରେ ଚିଓପ୍‌ସ ନାମକ ଜଣେ ଧନୀ ମିଶରୀୟ ଏକ ପିରାମିଡ଼ ନିର୍ମାଣ ପାଇଁ ଧନ ସଂଗ୍ରହ କରିବା ସକାଶେ ନିଜ ଝିଅକୁ ବେଶ୍ୟାବୃତ୍ତିରେ ଲଗାଇଥିଲେ । ପ୍ରାଚୀନ କାଳରେ ଗ୍ରୀସ୍‌ରେ ହିଟେରୀ, ଓଲେଟ୍ରାଇଡ଼ସ ଓ ଡିକ୍‌ଟେରୋଇଡସ୍ ନାମକ ତିନୋଟି ଶ୍ରେଣୀର ବେଶ୍ୟା ରହିଥିଲେ । ଏମାନେ ଭାରତର ଉଚ୍ଚକୋଟିର ବିଦୁଷୀ ଗଣିକା, ନର୍ତ୍ତକୀ ବାଦିକା - ଗାୟିକା, ବିଦ୍ୟାଧରୀ ଓ ଅଧମ କୋଟିର ବେଶ୍ୟାମାନଙ୍କ ସହ ତୁଳନୀୟ ।

ଗଣିକାମାନେ ଗ୍ରୀସିୟ ସମାଜରେ ଏତେ ଅମୂଲ୍ୟ ରତ୍ନ ଭାବେ ପରିଗଣିତ ହେଉଥିଲେ ଯେ ଏକଦା ଗ୍ରୀସ୍‌କୁ 'ଗଣିକାମାନଙ୍କର ଦେଶ' ବୋଲି କୁହାଯାଉଥିଲା । ଗ୍ରୀସ୍‌ର ଏକ ଲୋକକଥା ଅନୁସାରେ ଏଥେନ୍‌ସର ଜଣେ ରୂପବତୀ ଗଣିକା ଫ୍ରୀନୀର ମୂର୍ତ୍ତି ପରବର୍ତ୍ତୀ କାଳରେ ପ୍ରେମର ଦେବୀ "ଏଫ୍ରୋଦିତେ" ଭାବରେ ମନ୍ଦିର ଗୁଡ଼ିକରେ ପ୍ରତିଷ୍ଠିତ ହୋଇ ପୂଜିତ ହେବାକୁ ଲାଗିଥିଲା ।

ଗ୍ରୀସୀୟ ସଭ୍ୟତାରେ ପୁରୁଷ ବେଶ୍ୟା ଥିବା କଥା ମଧ୍ୟ ଜଣାପଡ଼େ । ହିନ୍ଦୁ, ମିଶରୀୟ ଓ ଚୀନ୍ ସଭ୍ୟତାରେ ବେଶ୍ୟାବୃତ୍ତି ଧର୍ମମୂଳକ ରହିଥିଲା । ହିବ୍ରୁମାନଙ୍କ ମଧ୍ୟରେ ବି ଏହା ଥିଲା ଧର୍ମମୂଳକ ।

ରୋମ୍‌ରେ ସେତେବେଳେ ନିମ୍ନୋକ୍ତ ପ୍ରକାର ବେଶ୍ୟା ରହିଥିବାର ଜଣାପଡ଼େ

୧. ଡ଼େଲିଫେଟି : ଧନୀ ସାମନ୍ତମାନଙ୍କ ସୁନ୍ଦରୀ ଉପପତ୍ନୀ ।
୨. ଫାମୋସି : ଉଚ୍ଚକୁଳର ଧର୍ନ ଓ କାମ ଲୋଲୁପୀ ବେଶ୍ୟା ।
୩. ଡୋରିସ୍ : ଶରୀର ସୌଷ୍ଠବଧାରିଣୀ ବେଶ୍ୟା ।
୪. ବଗିଚା ଆଦି ସାର୍ବଜନୀନ ସ୍ଥାନରେ ବୁଲି ବୁଲି ପୁରୁଷକୁ ଆକର୍ଷିତ କରୁଥିବା ବେଶ୍ୟା : ଲ୍ୟୁପି ।



Digitized by srujanika@gmail.com

୫. ଲିଙ୍ଗ ଓ ଯୋନି ଆକୃତିର ରୁଟି ତିଆରି କରି ବିକୁଥିବା ବେଶ୍ୟା : ହଲିକେରୀ

ଏତଦ୍‌ଭିନ୍ନ ବୁର୍‌ତୁଆରୀ, କାପି, ନାକ୍‌ଟିଲ୍ୟୁଇ, ଇଲିଟାବ୍‌ଡ଼ୀ, ଡାଇବୋଲେରିସ୍, ଫୋରାରୀ, ଗେଲିନୀ ଆଦି ଶ୍ରେଣୀର ବିଭିନ୍ନ ବେଶ୍ୟା ମଧ୍ୟ ରୋମ୍‌ରେ ରହିଥିଲେ ।

ଇଂରାଜୀରେ ବେଶ୍ୟାର ପର୍ଯ୍ୟାୟବାଚୀ ଶବ୍ଦ ହେଉଛି ପ୍ରଷ୍ଟିଚ୍ୟୁଟ୍ । ଏହି ଶବ୍ଦର ଉତ୍ପତ୍ତି ଲାଟିନ୍ ଶବ୍ଦରୁ :

– Prostitute comes from latin PROSTITUTUS meaning "set before, 'exposed', 'offered for sale', to prostitute oneself is to sacrifice integrity for material gain." [1]

ପ୍ରରମ୍ଭରୁ ଏହା ମୂଲ୍ୟ ବିନିମୟ ବା ବେପାର ସହ ସଂପୃକ୍ତ ଥିଲା । ପୃଥିବୀର ଯେ କୌଣସି ସ୍ଥାନରେ ବି ବେଶ୍ୟାବୃତ୍ତିର ଆରମ୍ଭ ବ୍ୟାବସାୟିକ ଭିତ୍ତିରେ ହୋଇଛି । କ୍ୱଚିତ୍ ଆଦିବାସୀଙ୍କ ମଧ୍ୟରେ ଏହାର ବ୍ୟତିକ୍ରମ ଦେଖାଯାଏ । ଏହି ବ୍ୟବସାୟ ମୂଲ୍ୟ ଆକାରରେ ହେଉ କି ଉପହାର ଆକାରରେ ହେଉ ପୁରୁଷକୁ ପରିଶୋଧ କରିବାକୁ ହେଉଥିଲା । ପାଶ୍ଚାତ୍ୟରେ ଏହାର କ୍ରମ ବିବର୍ତ୍ତନ ବିଭିନ୍ନ ପର୍ଯ୍ୟାୟରେ ଦୃଷ୍ଟିଗୋଚର ହୁଏ :

– "Prostitution, offering oneself or another for sexual intercouse for money, material gain. Legal definition vary, in U. K. only women defined as prostitutes, in some states in U.S., prostitute is any indiscriminately sexually active woman. In many societies, prostitution was religious act, e.g. in ancient Babylon, W. Asia. Tolerated in middle Ages, became problem with spread of venereal disease (16th. cent) and legally suppressed by protestant reformer. Police, regulation, attemp to close or licence brothels in 19th cent. Subsequence concern more with suppression of associated crimes, disease, e.g. West German imphasis on Medical Checks." [2]

---

1. Word origins and their Romantic stories by wilfred Funk. D. litt, Goyal Saab, Delhi.
2. Collins Concise Encyclopedia : PP 459 1st edn. 1977 oxford & IBH Publishing House, New Delhi.



Digitized by srujanika@gmail.com

**ବେଶ୍ୟାବୃତ୍ତିର ମହାକାଶ :**

''ଏ ପିକଚର୍ ଅଫ୍ ଇଂଲଣ୍ଡ'ରେ ଫରାସୀ ଲେଖକ ଅସନ୍ ହୋଲ୍‌ଜ ଲେଖିଛନ୍ତି ଯେ, ୧୭୯୮ ମସିହାରେ ଲଣ୍ଡନରେ କେବଳ ପଚାଶ ହଜାର ବେଶ୍ୟା ରହୁଥିଲେ । ଏଛେନୀ ହେମିଲଟନ୍ ତାଙ୍କ ''ମେମୋୟର୍ସ ଅଫ୍ ଦି କାଉଣ୍ଟ୍ ଡି ଗ୍ରମୋଣ୍ଟ'' ରେ ଇଂଲଣ୍ଡର ରାଜଦରବାରକୁ ଇନ୍ଦ୍ରକ ଆଖଡ଼ା ହୋଇଥିବା କଥା ଦର୍ଶାଇଛନ୍ତି । ମେଡମ୍ ଡ୍ୟୁବେରୀ ତାଙ୍କ ''ମେମୋୟର୍ସ'ରେ ଫ୍ରାନ୍ସ ବିଷୟରେ ଉଲ୍ଲେଖ କରି କହିଛନ୍ତି ଯେ, ଲୁଇ ପଞ୍ଚଦଶଙ୍କ ହାରେମ୍‌ରେ ନ' ବର୍ଷରୁ ଅଠର ବର୍ଷିୟ ଝିଅ ଭରପୂର ହୋଇ ରହିଥିଲେ । ଏହି ହାରେମ୍ ଲାଗି ସେତେବେଳେ ବର୍ଷକୁ ଦୁଇଲକ୍ଷ ପାଉଣ୍ଡ ଖର୍ଚ୍ଚ କରା ଯାଉଥିଲା । ୧୭୬୨ରେ ରେସ୍‌ଫିଟ୍-ଡି-ଲା-ବ୍ରେଁଟିନ୍ ''ପୋନୋଗ୍ରାଫ୍'ରେ ପେରିସ୍‌ର ତତ୍କାଳୀନ ଲୋକସଂଖ୍ୟା ୬ ଲକ୍ଷ ଓ ସହରରେ କୋଡ଼ିଏ ହଜାର ବେଶ୍ୟା ରହୁଥିବା କଥା ପ୍ରକାଶ କରିଛନ୍ତି । ଡ଼. ଫର୍ଣ୍ଣେଡ଼ୋ ହେନରିକ୍ସ ''ପ୍ରଷ୍ଟିଚ୍ୟୁସନ୍ ଇନ୍ ୟୁରୋପ ଆଣ୍ଡ ଦି ନ୍ୟୁ ୱାର୍ଲଡ଼'' ରେ ଲେଖିଛନ୍ତି ଯେ ରୁଷିଆର ବିଳାସୀ ମହାରାଣୀ କେଥରିନ୍ ଦି ଗ୍ରେଟ୍ ତାଙ୍କ ଦରବାରରେ ୧୨ ଜଣ ପୁରୁଷଙ୍କୁ 'ରକ୍ଷିତ' କରି ରଖିଥିଲେ । ଆରବ୍ୟ ରଜନୀରେ ମଧ୍ୟ ଆରବରେ ବହୁ ବେଶ୍ୟା ରହିଥିବା କଥା ଜଣାଯାଏ । ବାଇବେଲର 'ଯିଏ ପାପ କରିନି ସେ ଆଗ ପଥର ଫିଙ୍ଗୁ' ପ୍ରସଙ୍ଗଟି ମଧ୍ୟ ତତ୍କାଳୀନ ସମାଜରେ ବେଶ୍ୟା, ବ୍ୟଭିଚାରିଣୀମାନଙ୍କ ବ୍ୟାପକ ଉପସ୍ଥିତିକୁ ରେଖାଙ୍କିତ କରେ । ପ୍ରସିଦ୍ଧ ଆରବୀୟ ଦାର୍ଶନିକ, କବି ଖଲିଲ ଜୀବ୍ରାନଙ୍କ ବ୍ୟାଙ୍ଗ୍ୟାପ୍ତ ପୁସ୍ତକ "Spirit Rebellious" ରେ ମେଡମ୍ ରୋଜ ହେନୀ ବିବାହିତ ପତିକୁ ପରିତ୍ୟାଗ କରି ପ୍ରେମିକଙ୍କ ସହ ବସବାସ କରିବା ପରେ କହିଛନ୍ତି :

"Yes, I was an adulteress and a criminal when the people viewed me as the most honorable and faithful wife; today I am pure and noble in spirit, but in opinion I am polluted, for they judge the soul by the outcome of the body and measure the spirit by the standard of matter." [1]

"The cry of the graves" ରେ ସେ ପୁଣି ଏଭଳି ବ୍ୟବସ୍ଥା ମୂଳରେ କୁଠାରଘାତ କରି କହିଛନ୍ତି ଯେ :

"When a woman betrays her husband, they say she is an adulteress, but when the Emir makes her walk naked in the streets and stones her later, the Emir is noble XXX Betrayal of a husband may be an ugly deed, but stoning a living soul is a beautiful sight. Shall we meet evil with evil and say this is the Law ? Shall we fight corruption with greater corruption and say this is the Rule ? Shall we conquer crimes with more crimes and say this is Justice ?" [2]

---

1. Spirits Rebellious Maolame Rose Hanie by L. Galil Gibran PP. 17
2. Ibid. Cry of the Graves PP. 38 1964 edn. Jaico Publishing House, Bombay.



Digitized by srujanika@gmail.com

ବିଂଶ ଶତାବ୍ଦୀର ମଧ୍ୟଭାଗରେ ଆମେରିକାରେ ଦେହ-ବେପାରକୁ ଅବୈଧ ଘୋଷଣା କରାଯାଇଥିଲେ ହେଁ ତାହା ସମ୍ପ୍ରତି ଭୟଙ୍କର ଭାବରେ ବୃଦ୍ଧି ପାଇଚାଲିଛି । ଲସ୍ ବେଗାସ୍‌ର ଶତକଡ଼ା ପନ୍ଦର ଭାଗ ଲୋକ ଦେହ-ବେପାରରେ ଲିପ୍ତ । ୧୯୫୪ରେ ଏଠାରେ ବେଶ୍ୟାବୃତ୍ତିକୁ ବୈଧ ଘୋଷଣା କରାଯାଇଛି । ଫିଲାଡେଲଫିଆରେ ଦେହ-ବେପାର ପାରମ୍ପରିକ ରୂପରେ ଚାଲିଛି । ଲସ୍ ଏଞ୍ଜେଲ୍‌ସ, ମିୟାମି, ଶିକାଗୋ, ନ୍ୟୁୟର୍କ, ମେକ୍ସିକୋ, ଆଫ୍ରିକା ସବୁଠି ଦେହ-ବେପାର । କ୍ରିଷ୍ଟିନ୍ କିଲର୍, ଲେଡି ହେମିଲଟନ୍, ମିସ୍ ଷ୍ଟୁଆର୍ଟ, ଲୁଡି ଡିଲା, ଓ୍ୱେଲେୟର୍ସ. ଭାରତର ପାମେଲା ବୋର୍ଡୋସ୍ ଏ କ୍ଷେତ୍ରର କେତେକ ପ୍ରତିଷ୍ଠିତ ବଦନାମ ନାଁ ।

ଏବେ ବିରୁଟ୍ ଅନ୍ତର୍ଜାତୀୟ ଦେହ-ବେପାରର ମୁଖ୍ୟ ସିଣ୍ଡିକେଟ୍ । ସୁଇଜରଲେଣ୍ଡର 'ଫେଡେରାଲ ଇନସୁରାନ୍‌ସ ଟ୍ରିବୁନାଲ' ଦେହ-ବେପାରକୁ ବୈଧ ବ୍ୟବସାୟର ସଂଜ୍ଞା ପ୍ରଦାନ କରିଛି ।

ଭାରତ ଇତିହାସରେ ବେଶ୍ୟାକୁ ମହାମାୟା ଭାବରେ ଗ୍ରହଣ କରାଯାଇଛି । ଇଷ୍ଟ ଇଣ୍ଡିଆ କମ୍ପାନୀ ସରକାର ଭାରତରେ ଡିଆସିଲିକୁ ଲୋକପ୍ରିୟ କରିବା ଉଦ୍ଦେଶ୍ୟରେ ଡିଆସିଲି ଡବାରେ ଗୁଲ୍ ବକାବଲି, ପୁରୁରବା-ଉର୍ବଶୀ, ଉମରାଓଜାନ ଅଦା, ଗୌହର ଜାନ୍, ଖୁର୍ସିଦ୍, ମେନକା-ବିଶ୍ୱାମିତ୍ର ଆଦିଙ୍କ ଚିତ୍ର ମୁଦ୍ରଣ କରିଥିଲା ।

ମଧ୍ୟଯୁଗର ପ୍ରାରମ୍ଭିକ କାଳରେ ଲଣ୍ଡନରେ ଜନସାଧାରଣଙ୍କ ସୁବିଧା ନିମନ୍ତେ ସାଧାରଣ ସ୍ନାନାଗାରର ବ୍ୟବସ୍ଥା କରାଯାଇଥିଲା । ଫ୍ରାନ୍‌ସର ସ୍ନାନାଗାରର ପ୍ରଭାବରେ ଏ ସବୁ "ହଟ୍ ହାଉସ୍"ରେ ପରିଣତ ହୋଇ ବେଶ୍ୟାବୃତ୍ତିର ମୁଖ୍ୟ କେନ୍ଦ୍ରରେ ପରିଣତ ହୋଇଥିଲା । ଏଗୁଡ଼ିକ ଏତେ ସାଂଘାତିକ ଭାବରେ ଲୋକପ୍ରିୟ ହୋଇ ଉଠିଲା ଯେ, କେତେକ ପାଦ୍ରୀ ମଧ୍ୟ ଏ ଧନ୍ଦାରେ ସାମିଲ୍ ହୋଇଗଲେ ।

ଇଂଲଣ୍ଡର ବେଶ୍ୟାମାନେ ଅତ୍ୟନ୍ତ ଅସଭ୍ୟ ଓ ନିର୍ଲଜ୍ଜ ବୋଲି ପ୍ରବାଦ ରହିଛି । ସମ୍ବାଦ ଅଛି ଯେ ଫରାସୀ ବିପ୍ଳବ ପରେ ଲୀହ ଡେଭିସ୍ ନିଜର ତେରଟା ଯାକ ଝିଅଙ୍କୁ ବେଶ୍ୟାରେ ପରିଣତ କରିଥିଲେ । ଏଭଳି ପରିବାରର ଝିଅମାନେ ପରବର୍ତ୍ତୀ ସମୟରେ ଇଂଲଣ୍ଡ ଆସି ଦେହ-ବେପାରରେ ଲାଗି ଯାଇଥିଲେ । ଥିଏଟର ଓ ଚର୍ଚ୍ଚ ନିକଟରେ ଅଧିକାଂଶ ବେଶ୍ୟାଳୟମାନ ରହୁଥିଲା ।

ଅଷ୍ଟାଦଶ ଶତାବ୍ଦୀର ପ୍ରାରମ୍ଭରେ ଉଚ୍ଚଘରର ମହିଳାମାନେ ମଧ୍ୟ ମୁଖା ପିନ୍ଧି ବେଶ୍ୟାବୃତ୍ତି କରୁଥିଲେ । ସବୁଠୁ ବେଶି ବିଖ୍ୟାତ "ବୋନ୍ୟୋ" ନାମକ ସ୍ନାନାଗାରଟି ଇଉରୋପକୁ ଧର୍ମଯୁଦ୍ଧର ଦାନ ବୋଲି କୁହାଯାଏ । ୧୧୬୧ରେ ବ୍ରିଟିଶ୍ ପାର୍ଲିଆମେଣ୍ଟ ଆଇନ୍ ପାସ୍ କରି ବେଶ୍ୟାବୃତ୍ତିକୁ ମାନ୍ୟତା ପ୍ରଦାନ କରିଥିଲା । ଧୀରେ ଧୀରେ ବେଶ୍ୟାମାନେ ଗୁପ୍ତଚର ବୃତ୍ତିରେ ମଧ୍ୟ ନିୟୋଜିତ ହେଲେ ।



Digitized by srujanika@gmail.com

ରୋମ୍‌ର ସମ୍ରାଟଗଣ ଯେତେବେଳେ ଯୌନାଚାରକୁ ବ୍ୟବସାୟର ରୂପ ଦେଲେ, ସେତେବେଳେ ସାଧାରଣ ସ୍ନାନାଗାର ସାଙ୍ଗକୁ ମନ୍ଦିର ସବୁ ମଧ୍ୟ ବେଶ୍ୟାଳୟରେ ପରିଣତ ହେଲା ।

ପର୍ତ୍ତୁଗାଲ, ତ୍ରିପଲି, ଲେବାନନ୍, ଆଫ୍ରିକା, ନାଇଜିରିଆ, ହଙ୍ଗ୍‌କଙ୍ଗ୍, ସିଙ୍ଗାପୁର, ମ୍ୟୁନିକ୍ ଆଦି ଆଜି ବେଶ୍ୟାବୃତ୍ତିର ବଡ଼ ଓ ବିଖ୍ୟାତ ବିପଣି । ଜାପାନୀ 'ଗିସା' ଓ 'ୟୋସିବାରା ଘର' କଥା ଆଜି ବିଶ୍ବବିଖ୍ୟାତ । ଚୀନର ''ହାଓ ଥ୍ଙ୍ଗ' ବା ଫୁଲ-ନାବ' ବେଶ୍ୟାବୃତ୍ତି ଓ ନାବକେଳୀର ଭାସମାନ କେନ୍ଦ୍ର ।

ନାଇଜିରିଆରେ ସ୍କୁଲ ଛାତ୍ରୀମାନଙ୍କୁ ବେଶ୍ୟାବୃତ୍ତି ନିମନ୍ତେ ପ୍ରଲୋଭିତ କରାଯାଉଥିବା କଥାର ଚାଞ୍ଚଲ୍ୟକର ବିବରଣୀ ''ସଂଡେ ପୋଷ୍ଟ' ଦେଇଛି । ଦୁର୍ଭିକ୍ଷ ପ୍ରପୀଡ଼ିତ ଇଥିଓପିଆ ଓ ଚାଦରେ ତ ଖଣ୍ଡେ ପାଉଁରୁଟି ବିନିମୟରେ ଦେହ-ବେପାର ଚାଲେ । ବିଶ୍ୱର ସମସ୍ତ ତୀର୍ଥସ୍ଥାନମାନ ବେଶ୍ୟାବୃତ୍ତିର ଏକ ଏକ ଆଡ୍‌ଡା । ଗାଜା ଷ୍ଟ୍ରିପ୍, ଜେରୁଜେଲମ୍, ପାଲେଷ୍ଟାଇନ୍, ଇରାନ୍, ଇରାକ୍ ସବୁଠି ଆଜି ବେଶ୍ୟାବୃତ୍ତିର ଅବାଧ ସଂସାର ।

**ଶିଳ୍ପ ବିପ୍ଳବ ଓ ବେଶ୍ୟା :**

ଇଉରୋପର ଶିଳ୍ପ ବିପ୍ଳବ ଓ ବିଶ୍ୱଯୁଦ୍ଧ ଏମିତି ଦୁଇଟି ଘଟଣା, ଯାହାର ବ୍ୟାପକ ପ୍ରଭାବ ବିଭିନ୍ନ କ୍ଷେତ୍ରରେ ସମଗ୍ର ବିଶ୍ୱରେ ପଡ଼ିଲା । ମାନବ ସମାଜର ଚରିତ୍ର ବଦଳିଗଲା । ପାରମ୍ପରିକ ସଂସ୍କୃତି ଓ ସଭ୍ୟତା ବିଦୀର୍ଣ୍ଣ ହୋଇ ଏକ ବହୁ ଆୟତ ମିଶ୍ରିତ ସଂସ୍କୃତିକୁ ଜନ୍ମ ଦେଲା ।

ମଧ୍ୟଯୁଗରେ ବେଶ୍ୟାବୃତ୍ତି ବିକାଶର ପ୍ରଧାନ କାରଣ ଥିଲା ସାମନ୍ତବାଦ । ତା' ପରବର୍ତ୍ତି ପୁଞ୍ଜିବାଦୀ ଓ ଶିଳ୍ପାୟନ ଯୁଗରେ ଶିଳ୍ପର ବ୍ୟାପକତା ଓ ପ୍ରତିଷ୍ଠା ଲୋକ ଜୀବନକୁ ଗଭୀର ଭାବରେ ପ୍ରଭାବିତ କଲା । ଶିଳ୍ପ ପ୍ରତିଷ୍ଠା ଓ ବୈଜ୍ଞାନିକ ଆବିଷ୍କାର, ଉଦ୍‌ଭାବନ, କୃଷିଜୀବୀ ଓ କାରିଗରମାନଙ୍କୁ, ବିଶେଷତଃ ଗ୍ରାମ୍ୟ କାରିଗରମାନଙ୍କୁ ସେମାନଙ୍କ ଚରିତ୍ର ବଦଳାଇବାକୁ ବାଧ୍ୟ କଲା । ଏ ପ୍ରତିଯୋଗିତାରେ ସେମାନେ ମଧ୍ୟ ପ୍ରତିଦ୍ୱନ୍ଦ୍ୱୀ ହୋଇପଡ଼ିଲେ । ସହର ସଂଖ୍ୟା ବୃଦ୍ଧି ପାଇଲା । କଳକାରଖାନା, ଖଣି ଖାଦାନକୁ କେନ୍ଦ୍ରକରି ସହର ଗଢ଼ି ଉଠିଲା । ଅଧିକ ଲାଭପ୍ରଦ ଜୀବିକାର ଆକର୍ଷଣ ଶ୍ରମଜୀବୀ ଲୋକଙ୍କୁ ସହରକୁ ଟାଣିଲା । ଗ୍ରାମ୍ୟ ସଭ୍ୟତାକୁ ସହରୀ ସଭ୍ୟତା ଆଘାତ ହାଣିଲା । ଗ୍ରାମ୍ୟ ଅର୍ଥନୀତି ପ୍ରତିହତ ହେଲା । ମାନବୀୟ ସଂପର୍କ ଶିଥିଳ ହୋଇପଡ଼ିଲା । ଲୋକଙ୍କୁ ଭୋଗସର୍ବସ୍ୱ ଓ ଆତ୍ମକୈନ୍ଦ୍ରିକ କଲା ।

ଗାଁ-ପରିବାର ଛାଡ଼ି ଆସିଥିବା ଦୂରାଗତ, ଶ୍ରମିକମାନେ କଠିନ ପରିଶ୍ରମ ପରେ ବେଶ୍ୟା ଭିତରେ ଭାବାତ୍ମକ ଶାନ୍ତି, ସନ୍ତୋଷ ଖୋଜିଲେ । ମଦ, ମାଂସ ଓ ମାଇକିନା ଭିତରେ ହାଡ଼ଭଂଗା



Digitized by srujanika@gmail.com

ଖଟଣିର କ୍ଳାନ୍ତି ଅପନୋଦନ ଚାହିଁଲେ । ଝିଅମାନଙ୍କୁ ଅଳ୍ପ ପରିଶ୍ରମରେ ସହରୀ ଜୀବନର ଚାକଚକ୍ୟ ନିମନ୍ତେ ଅଧିକ ପଇସା ମିଳିଲା । ସହରତଳି ଅଞ୍ଚଳରେ ସେମାନଙ୍କ ବସତି ଗଢ଼ି ଉଠିଲା । ନାନା ଅସାମାଜିକ ବ୍ୟକ୍ତିମାନେ ରହିବାର ଏକ ଠିକଣା ପାଇଗଲେ । ବେଶ୍ୟାବୃତ୍ତି ବଢ଼ି ଚାଲିଲା । ଶ୍ରମିକ, ଡ୍ରାଇଭର, କୁଲି, ବୁଲା ବିକାଳୀମାନେ ସାଧାରଣ ବେଶ୍ୟାଙ୍କ ଗରାଖ ହେଲାବେଳେ ଉନ୍ନତ ଶ୍ରେଣୀରେ ମଧ୍ୟ ଉନ୍ନତ, ଶିକ୍ଷିତ ଝିଅଙ୍କ ଚାହିଦା ବଢ଼ିଲା ।

ଶିଳ୍ପ ସଂସ୍କୃତି ସହ ବେଶ୍ୟାବୃତ୍ତିର ପ୍ରବଳ ବିକାଶ ହୋଇ ଚାଲିଲା । ସାମୟିକ ବେଶ୍ୟାମାନଙ୍କ ସଙ୍ଗେ କେତେକ ଲୋକ ଏ ଲାଭଜନକ ବ୍ୟବସାୟକୁ ସ୍ଥାୟୀ ଧନ୍ଦାର ରୂପ ଦେଲେ । ଅଣ୍ଡର ୱାର୍ଲ୍ଡ ବିକଶିତ ହେଲା । ଝିଅ କିଣାବିକା କାରବାର ପ୍ରାଚୀନ ଦାସପ୍ରଥାକୁ ବି ବଳିଗଲା । ପୋଲିସ୍‌କୁ ମଧ୍ୟ ମାଗଣା କାମନାପୂର୍ତ୍ତି ଓ ରୋଜଗାରର ଅତିରିକ୍ତ ପନ୍ଥା ଫିଟି ଗଲା । ଅପହରଣ, ଧର୍ଷଣ, ଠକେଇ ବୃଦ୍ଧି ପାଇଲା । ଆଦିବାସୀ, ହରିଜନ, ଅନୁନ୍ନତ ଶ୍ରେଣୀ ଓ ଜାତିର ସ୍ତ୍ରୀମାନେ ପୁଞ୍ଜିବାଦୀ ସହରୀ ଆକର୍ଷଣ ଆଗରେ ଆତ୍ମ ସମର୍ପଣ କଲେ ।

ଯେଉଁ ଦେଶ ଯେତେ ଶିଳ୍ପ ସମୃଦ୍ଧ ସେଠାରେ ଯୌନାଚାର ସେତେ ବେଶି ଉଗ୍ର । ଆମେରିକା ଭଳି ଶିଳ୍ପୋନ୍ନତ ଓ ଅର୍ଥସମୃଦ୍ଧ ରାଷ୍ଟ୍ର ଯୌନାଚାର, ଯୌନବିକାର, ଯୌନରୋଗ, ଯୌନ ଅପରାଧର ପେଣ୍ଠସ୍ଥଳୀରେ ପରିଣତ ହେଲା । ଚୋରାକାରବାର, ତସ୍କରୀ, ଗୁପ୍ତଚର ବୃତ୍ତିରେ ବେଶ୍ୟାମାନଙ୍କୁ ନିୟୋଜିତ କରାଗଲା । ବେଶ୍ୟାବୃତ୍ତିର ଆଧୁନିକ ରୂପ ବଦଳିବାରେ ଲାଗିଲା । ମଡେଲିଂ, ନାଟକ, ଚଳଚ୍ଚିତ୍ର, ଅର୍କେଷ୍ଟ୍ରା, ସଙ୍ଗୀତ, ଚିତ୍ରକଳା, ନୃତ୍ୟ, ସେକ୍ରେଟାରୀ, ଷ୍ଟେନୋଗିରୀ, ଗାଇଡ୍, ନର୍ସ ଆଦି ଅନେକ ନୂଆ ରୂପ ଫୁଟିବାକୁ ଲାଗିଲା ।

## ଯେଉଁଠି ସୈନିକ ଥିବେ, ସେଠି ବେଶ୍ୟା ବି ଥିବେ :

ଯୁଦ୍ଧ କାଳରେ ବେଶ୍ୟାବୃତ୍ତିର ଫସଲ ଖୁବ୍ ବେଶି ଓ ଖୁବ୍ ଶୀଘ୍ର ଉଧେଇ ଥାଏ । ସେତେବେଳେ ସାମାଜିକ, ମନୋବୈଜ୍ଞାନିକ ଓ ଅନ୍ୟାନ୍ୟ ପରିସ୍ଥିତି ବେଶ୍ୟାବୃତ୍ତି ଲାଗି ଅଧିକ ଅନୁକୂଳ ଥାଏ । ସବୁ ଦେଶ, ସବୁ କାଳରେ ଏମିତି ହୋଇଥାଏ ।

ଜର୍ମାନ୍ ଆକ୍ରମଣ ପରେ ଇଂଲଣ୍ଡ ଉପରେ ଫ୍ରାନ୍‌ସର ଗଭୀର ପ୍ରଭାବ ପଡ଼ିଥିଲା । ଏହା ଫଳରେ ଇଂଲଣ୍ଡରେ 'ସ୍ନାନାଗାର ବେଶ୍ୟାଳୟ' ବା 'ହଟ୍ ହାଉସ କଲଚର' ବେଶ୍ ପ୍ରଗତି କଲା ଏବଂ ଧର୍ମଗୁରୁ ମଧ୍ୟ ଏଥିରେ ବ୍ୟାପକ ପରିମାଣରେ ଅଂଶଗ୍ରହଣ କରିଥିଲେ ।

ଧର୍ମ ନାମରେ ହୋଇଥିବା ଯୁଦ୍ଧରେ ବିଜୟୀ ପକ୍ଷ ପରାଜିତ ଦେଶ ବା ପ୍ରଦେଶର ସ୍ତ୍ରୀମାନଙ୍କ ସହ ବେଶ୍ୟା ଭଳି ବ୍ୟବହାର କରିବାକୁ ସବୁବେଳେ ଧାର୍ମିକ କର୍ତ୍ତବ୍ୟ ମନେକରି ଆସିଛନ୍ତି ।



Digitized by srujanika@gmail.com

ପ୍ରଥମ ବିଶ୍ୱଯୁଦ୍ଧରେ ବେଲଜିୟମ ଦିଗରେ ଆଗୋଉଥିବା ଜର୍ମାନ୍ ସୈନିକଙ୍କ ହାତରେ ଅନ୍ୟ ଏକ ଶକ୍ତିଶାଳୀ ଅସ୍ତ୍ର ମଧ୍ୟ ରହିଥିଲା । ସେ ମହାସ୍ତ୍ର ଥିଲା ଧର୍ଷଣ ଓ ବଳାତ୍କାରର ଅସ୍ତ୍ର । ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ବର୍ଲିନ ଅଭିମୁଖେ ଯାଉଥିବା ରୁଷିୟ ସୈନିକଙ୍କ ହାତରେ ମଧ୍ୟ ଏହି ଅସ୍ତ୍ର ରହିଥିଲା । ଭିଏତ୍‌ନାମ ଯୁଦ୍ଧବେଳେ ଭିଏତନାମୀ ସ୍ତ୍ରୀମାନେ ଶତ୍ରୁ ଆମେରିକାନ ବାହିନୀ ହାତରେ ନିଜ ସତୀତ୍ୱ ବଳି ଦେବାକୁ ବାଧ୍ୟ ହେଉଥିଲେ । ପାକିସ୍ଥାନୀ ବାହିନୀ ତତ୍କାଳୀନ ପୂର୍ବ ପାକିସ୍ଥାନରେ ସଶସ୍ତ୍ର ପଇଁତରା ମାରୁଥିଲା ବେଳେ ବଙ୍ଗାଳୀ ଝିଅମାନଙ୍କୁ ବନ୍ଧୁକ ମୂନରେ ଦେହ ସମର୍ପଣ କରିବାକୁ ବାଧ୍ୟ କରୁଥିଲେ । ଶତ୍ରୁପକ୍ଷର ମାନ ମର୍ଦ୍ଦନ ଥିଲା ଏହି ମହାସ୍ତ୍ର । ହିଟଲ୍‌ର ମଧ୍ୟ ଏ ଅସ୍ତ୍ର ବ୍ୟବହାର କରି ଶତ୍ରୁବାହିନୀର ମନୋବଳ ଭାଙ୍ଗିଥିଲେ । ଜର୍ମାନ୍‌ମାନେ ଇହୁଦୀ ଝିଅମାନଙ୍କୁ ସଡ଼କରେ ନଗ୍ନନୃତ୍ୟ କରାଇ ସାମୂହିକ ଭାବରେ ଧର୍ଷଣ କରୁଥିଲେ । ହିଟଲର କହୁଥିଲେ :

— ଜନତା ଏକ ସ୍ତ୍ରୀ ଭଳି । ସ୍ତ୍ରୀ ଯେଉଳି ଧର୍ଷଣକାରୀ ଆଗରେ ଆତ୍ମସମର୍ପଣ କରିବାକୁ ବାଧ୍ୟ ହୁଏ, ଜନତା ମଧ୍ୟ ସେହିପରି ପରାକ୍ରମୀ ଆଗରେ ନତମସ୍ତକ ହୋଇଥାଏ ।

ଏ ପ୍ରସଙ୍ଗରେ ଦାର୍ଶନିକ ନିତ୍‌ସେଙ୍କ ଏକ ଉକ୍ତି ମଧ୍ୟ ମନକୁ ଆସେ । ସେ କହିଥିଲେ :

— 'ପୁରୁଷ ମାତ୍ରକେ ଯୁଦ୍ଧବିଦ୍ୟା ଶିକ୍ଷା ଦିଆଯିବା ଉଚିତ ଏବଂ ସ୍ତ୍ରୀକୁ ଯୁଦ୍ଧରେ ବିଜୟଲାଭ କରିଥିବା ବିଜେତାର ମନୋରଂଜନ ଲାଗି ତାଲିମ୍ ମଧ୍ୟ ଦିଆଯିବା ଉଚିତ ।

ଉପସାଗରୀୟ ଯୁଦ୍ଧବେଳେ ଏକ ସିକ୍ରେଟ୍ ମିଶନ୍‌ରେ ଆମେରିକା ତା'ର ସାମରିକ ବାହିନୀକୁ ହଜାର ହଜାର ସଂଖ୍ୟାରେ ସ୍ତ୍ରୀ ଯୋଗାଇଥିଲା । ସେଥିରେ କିଛି ବେଶ୍ୟା ଥିଲେ ଓ କେତେକ ଝିଅଙ୍କୁ ବାଧ୍ୟ ବାଧକତାରେ ଉଠାଇ ଅଣାଯାଇଥିଲା । ଏବେ ଶତାଧିକ ଝିଅ ଆମେରିକାର କୋର୍ଟରେ ଆମେରିକା ବିରୁଦ୍ଧରେ ମକଦ୍ଦମା ରଜୁ କରିଛନ୍ତି । ହଜାର-ହଜାର ଇରାକୀ ସ୍ତ୍ରୀମାନେ ମଧ୍ୟ ଏହାର ଶିକାର ହୋଇଛନ୍ତି । ଭିଏତନାମ ଯୁଦ୍ଧ ପରେ ଜଣେ ଆମେରିକାନ୍ ସାମରିକ ଅଧିକାରୀ ଗର୍ବର ସହିତ ଛାତି ପିଟି କହିଥିଲେ—

—'ଯୁଦ୍ଧରେ ଯେଉଁଠି ସୈନିକ ଥିବେ, ସେଠି ଧର୍ଷଣ ବି ଥିବ, ବେଶ୍ୟାମାନେ ବି ରହିଥିବେ ।'

ପଞ୍ଜାବ, କାଶ୍ମୀର, ଆସାମ, ଜାପାନ ଆଦି ଅଞ୍ଚଳରେ ଦେଶ ବିଦେଶର ଶରଣାର୍ଥୀ ଶିବିରମାନଙ୍କରେ ମଧ୍ୟ ବେଶ୍ୟାବୃତ୍ତିର ବ୍ୟାପକ ସଂସାର । ଆତଙ୍କବାଦ, ଦଙ୍ଗା ମଧ୍ୟ ଏହାକୁ ସାହାଯ୍ୟ କରେ । ପାଲେଷ୍ଟାଇନ, ତୃତୀୟ ବିଶ୍ୱ ମଧ୍ୟ ଏହାର ଅପବାଦ ନୁହେଁ ।



Digitized by srujanika@gmail.com

ଦିଲ୍ଲୀ ଜି. ବି. ରୋଡ଼ (ଶ୍ରଦ୍ଧାନନ୍ଦ ମାର୍ଗ) ର ଜଣେ ପୁରୁଖା ଦଲାଲ ବାବୁଲାଲ ଏକ ସାକ୍ଷାତ୍‌କାରରେ କହନ୍ତି :

– ''ଆଜିକାଲି ଆପଣ ଯେଉଁ କଲ୍‌ଗାର୍ଲ ଓ ହୋଟେଲରେ ଝିଅଧନ୍ଦା କାରବାର ଦେଖୁଛନ୍ତି, ସେଇଟା ଦିଲ୍ଲୀକୁ ଦ୍ୱିତୀୟ ବିଶ୍ୱଯୁଦ୍ଧର ଦାନ । ଏକେତ ସେତେବେଳେ ଲୋକେ ଠିକା ପାଇବା ଲାଗି ଅଫିସରମାନଙ୍କୁ ଲାଞ୍ଚ ଦେବା ବଦଳରେ ଝିଅ ସପ୍ଲାଇ କରି ସେମାନଙ୍କୁ ଖୁସି କରିବାର ଉପାୟ ବାହାର କରିଥିଲେ । ସେତେବେଳେ ଦିଲ୍ଲୀରେ ଥିବା ବଡ଼ ବଡ଼ ଅଫିସର ଓ ସୈନିକମାନେ ଏ କାମ ଆରମ୍ଭ କରିଥିଲେ । ଜଣେ ଝିଅକୁ ଇଣ୍ଡିଆ ଗେଟ୍‌କୁ ନେଇ ବୁଲିବା ଲାଗି ବା ତା' ସହିତ କିଛି ସମୟ ବିତାଇବା ଲାଗି ତିନି-ତିନି ଶହ ଯାକେ ଟଙ୍କା ଦେଉଥିଲେ ସେମାନେ ।''

## ଆନନ୍ଦ ପୁତ୍ରୀର ନିଦ ମଧ୍ୟ ତା'ର ହୋଇ ନ ଥାଏ :

ଫ୍ରାନ୍‌ସରେ ବେଶ୍ୟାମାନଙ୍କୁ ''ଆନନ୍ଦ ପୁତ୍ରୀ'' ବୋଲି କୁହା ଯାଇଥାଏ । ଏହିଠାରୁ ହିଁ ଏ ଧାରଣାର ଜନ୍ମ ଯେ ବେଶ୍ୟାମାନେ ସବୁବେଳେ ଆନନ୍ଦ ଉଲ୍ଲାସରେ କାଳାତିପାତ କରିଥାନ୍ତି । ହେଲେ ଏ କଥାରେ ସତ୍ୟତା ନାହିଁ । ସେମାନଙ୍କ ଅଦମ୍ୟ କାମୁକତା, ଅଦମ୍ୟ ବାସନା ରହିଥିବା କଥା ମଧ୍ୟ ସତ୍ୟ ନୁହେଁ । ବିଭିନ୍ନ ବିଶେଷଜ୍ଞମାନଙ୍କ ବ୍ୟାପକ ଅଧ୍ୟୟନ ଓ ଗବେଷଣାରୁ ଜଣା ଯାଇଛି ଯେ ବେଶ୍ୟାବୃତ୍ତି ସେମାନଙ୍କ କାମ ବାସନାକୁ ତୃପ୍ତ କରେ ନାହିଁ ବରଂ ଅଧିକ ଅତୃପ୍ତି ଦିଏ । କାଁ ଭାଁ କେହି ଜଣେ ଅଧେ କାମତୃପ୍ତି ଲାଭ କରିବାରେ ସଫଳତା ପାଇଥାନ୍ତି । ବେଶ୍ୟାମାନେ ଏକରକମ କାମବୈରାଗ୍ୟଗ୍ରସ୍ତା ସନ୍ନ୍ୟାସିନୀ । ବେଶ୍ୟାବୃତ୍ତି ଏକରକମର ଯୌନ ବିକାର ।

ମହାକବି ଶୁଦ୍ରକ ତାଙ୍କ ''ପଦ୍ମ ପ୍ରାଭୃତକ ' ନାଟକରେ ଲେଖିଛନ୍ତି ଯେ—

''କାମାବେଶ ଜାଗ୍ରତକାରୀ ଏ ଗଣିକା ବସ୍ତି ସବୁ ପ୍ରକାର ଗଣ୍ଡଗୋଳର ଉତ୍ସ, ଧୋକାର ବିପଣୀ, ଠକେଇର ଆଡ୍‌ଡା ଓ ଗରୀବ ଲୋକଙ୍କୁ ପ୍ରବେଶାଧିକାର ନ ଦେବା ଲାଗି କୁଖ୍ୟାତ ।''

ଗରୁଡ଼ ପୁରାଣର ପୂର୍ବ ଖଣ୍ଡରେ ଗଣିକା ଜୀବନର ବ୍ୟଥା କଥା ବଡ଼ କରୁଣ ଭାବରେ ପ୍ରକାଶ କରାଯାଇଛି :

''ଗଣିକାର ନିଦ ମଧ୍ୟ ତାର ହୋଇ ନଥାଏ । ଗଣିକାର ଆଖିର ନିଦ ଅନ୍ୟମାନଙ୍କ ଇଚ୍ଛା ଉପରେ ଆଧାରିତ ଓ ସେମାନଙ୍କର ଆଶ୍ରିତ । ଅନ୍ୟର ମନ ଧରିବା ଓ ମନ ଜୟ କରିବାର ଅସହାୟତାରେ ହିଁ ତାର ସମଗ୍ର ଜୀବନକାଳ ଅତିକ୍ରାନ୍ତ ହୋଇଯାଏ । ହୃଦୟରେ



Digitized by srujanika@gmail.com

ଦୁଃଖ, ଶୋକର ଜ୍ୱାଳା ପ୍ରଜ୍ୱଳିତ ହେଉଥାଉ ପଛକେ, ସେ ଓଠରେ ହସର ରେଖା ଖେଳାଇ ରଖିବାକୁ ବାଧ୍ୟ । ଯିଏ ବି ଅର୍ଥ ଦେଉ, ତାକୁ ଦେହ ସମର୍ପଣ କରିବାକୁ ହିଁ ପଡ଼ିଥାଏ । ହୃଦୟରେ ଅନେକ ଦୁଃଖ ସନ୍ତାପକୁ ଜୀବନ ସାରା ସାଇତି ରଖିବାକୁ ହୋଇଥାଏ । ଅନେକ ଥର ଏମିତି ବି ଦୁର୍ଯୋଗ ଆସେ ଯେତେବେଳେ ତାକୁ କୌଣସି ଦୁଷ୍ଟ ଗରାଖର କ୍ରୂର ହାତରେ ଗଳାଟିପା ହୋଇ ବେଚାରୀ ବେଶ୍ୟାକୁ ମରିବାକୁ ପଡ଼ିଥାଏ । ଗଣିକାର ଜୀବନରେ ମୃତ୍ୟୁ ଅନେକ ଥର କାମ୍ୟ ଓ ବରେଣ୍ୟ ମଧ୍ୟ ହୋଇଥାଏ ।''

**ଅନ୍ଧାରୀ ବେପାରର ଆଲୋକିତ ଆତ୍ମା :**

ବେଶ୍ୟାମାନେ ମଧ୍ୟ ଆମ ପରି ସାଧାରଣ ମଣିଷ । ଆମ ପରି ସେମାନଙ୍କ ମଧ୍ୟ ହସ କାନ୍ଦର ଦୁନିଆଁ । ସେମାନେ ମଧ୍ୟ ଅନ୍ୟାନ୍ୟ ସ୍ତ୍ରୀମାନଙ୍କ ପରି ଧର୍ମାଚାର କରନ୍ତି । ବ୍ରତ, ଉପବାସ କରନ୍ତି ।

ଏକ ସର୍ଭେ ରିପୋର୍ଟରୁ ଜଣାଯାଇଛି ଯେ, ସାଧାରଣତଃ ବେଶ୍ୟାମାନେ ଈଶ୍ୱରକାତର । ପ୍ରତ୍ୟେକ ହିନ୍ଦୁ ବେଶ୍ୟା ଘରେ ବିଭିନ୍ନ ଦେବଦେବୀଙ୍କ ଚିତ୍ର ଓ ମୂର୍ତ୍ତି ଦେଖିବାକୁ ମିଳେ । ସେମାନେ ଭକ୍ତି ସହକାରେ ନିଷ୍ଠାର ସହିତ ପୂଜା, ଆରାଧନା କରିଥାନ୍ତି । ସେହିପରି ମୁସଲିମ୍ ବେଶ୍ୟା ରମଜାନ ମାସରେ 'ରୋଜା' ରଖନ୍ତି, 'ନମାଜ୍' ପାଠ କରନ୍ତି, ମହରମର ଶୋକ ଦିବସରେ ଧନ୍ଦା ବନ୍ଦ ରଖନ୍ତି । କଳାଲୁଗା ପିନ୍ଧନ୍ତି । ଦୀନ ଦରିଦ୍ରମାନଙ୍କୁ ସାହାର୍ଯ୍ୟ କରନ୍ତି । ଏ ସବୁକୁ ଲୋକ ଦେଖାଣିଆ ବୋଲି ଉଡ଼ାଇ ଦିଆଯାଇପାରିବ ନାହିଁ । ଏହା ସେମାନଙ୍କ ନିର୍ମଳ ଆତ୍ମାର ପରିଚୟ ।

ମହାରାଷ୍ଟ୍ର ଓ ତା'ର ପାଖଆଖ ଅଞ୍ଚଳରେ ବେଶ୍ୟାମାନେ ଶୁକ୍ରବାର ଦିନ ନିଜଘରେ ଉଲଗ୍ନ ଯଜ୍ଞ କରି ନିଜକୁ ଶୁଦ୍ଧପୂତ କରନ୍ତି ଏବଂ ''ନାଭିର ତଳଭାଗ ଜୀବନ ସାରା ସୁସ୍ଥ ଓ ନିରୋଗ'' ରହିବା ଲାଗି ପ୍ରାର୍ଥନା କରନ୍ତି । ଅନେକ ସନ୍ତୋଷୀ ମାତା, ଗଣେଷ, ହନୁମାନଙ୍କ ପୂଜା କରନ୍ତି । ଦିଲ୍ଲୀର ଜି. ବି. ରୋଡ୍‌ରେ ବେଶ୍ୟାମାନଙ୍କ ଏକ ହନୁମାନ ମନ୍ଦିର ରହିଛି ।

ଉଜ୍ଜୟିନୀର ରାମରତନ ଶର୍ମା ମାର୍ଗରେ ପ୍ରାଚୀନ ମଙ୍ଗତେଶ୍ୱର ମହାଦେବଙ୍କ ମନ୍ଦିର । ଏହି ମନ୍ଦିରର ସମସ୍ତ ପରିଚାଳନା ଭାର ବେଶ୍ୟାମାନଙ୍କ ଉପରେ । ଏଠି ବେଶ୍ୟାମାନେ ପ୍ରତି ସୋମବାର ଦିନ ଉପବାସ କରନ୍ତି । ସେଦିନ ଯେ କୌଣସି ମୂଲ୍ୟ ବିନିମୟରେ ବି ସେମାନେ କାହାକୁ ଦେହଦାନ କରନ୍ତି ନାହିଁ । ମୋକ୍ଷ ପ୍ରାପ୍ତି ନିମନ୍ତେ ପୁରାଣରେ ବର୍ଣ୍ଣିତ ଚଉରାଶିଟି ମନ୍ଦିର ମଧ୍ୟରୁ ଏହି ମଙ୍ଗତେଶ୍ୱର ମହାଦେବଙ୍କ ମନ୍ଦିରଟି ଅନ୍ୟତମ ।



Digitized by srujanika@gmail.com

## ବଡ଼ଲାଟ ଓ ଇଂରେଜ ଅଫିସରମାନଙ୍କ ମାଁ :

ଇଷ୍ଟ ଇଣ୍ଡିଆ କଂପାନୀର ଲୁଟତରାଜ ପରେ ମଧ୍ୟ ବେଶ୍ୟା ମୁନ୍ନି ଜାନ୍‌ର ମୃତ୍ୟୁପରେ ତାଙ୍କ ଘରୁ ପାଞ୍ଚକୋଟି ପଇଂତ୍ରିଶ ଲକ୍ଷ ବାର ହଜାର ପାଞ୍ଚଶହ ଦଶ ଟଙ୍କା ସାଢ଼େ ବାର ଅଣା ମୂଲ୍ୟର ସମ୍ପତ୍ତି ମିଳିଥିଲା । ଏଥିରେ ସୁନା, ରୂପା, ଧାତୁ, ହୀରା, ନୀଳା, ସୁନାରୂପା ବାସନ, ରେଶମ, ପଶମ ଲୁଗାପଟା, ଘର, ଦୋକାନ, ବଗିଚା, ବ୍ୟାଙ୍କ ଖାତା ଓ ନଗଦ ଟଂକା ସାମିଲ ଥିଲା । ମୁନ୍ନି ଜାନ୍ ଥିଲେ ଜଣେ ସଂପନ୍ନତମ ବେଶ୍ୟା । ତାଙ୍କର ଗୋଟାଏ ରାତିର ମୁଜରାର ମୂଲ୍ୟ ଥିଲା ସେତେବେଳେ ଦଶ ହଜାର ଟଙ୍କା । ତାଙ୍କୁ ଥରେ ଦିଲ୍ଲୀରୁ ଦଶ ହଜାର ଟଙ୍କାଦେଇ ମୁର୍ଶିଦାବାଦକୁ ଅଣା ଯାଇଥିଲା । ସେଠାରେ ମୀର ଜାଫରଙ୍କ ନଜର ତାଙ୍କ ଉପରେ ପଡ଼ିଥିଲା ଓ ସେ ତାଙ୍କୁ ନିଜ ମହଲକୁ ନେଇ ବେଗମ୍ କରି ରଖିଥିଲେ ।

ଇଂରେଜ ଅଫିସରମାନଙ୍କ ସଙ୍ଗେ ମିଶି ମୁନ୍ନି ଜାନ୍ ଦିନରାତି ତାଙ୍କର ଧନଭଣ୍ଡାର ବୃଦ୍ଧି କରିବାକୁ ଲାଗିଲେ । ଇଂଲଣ୍ଡର ହାଉସ୍ ଅଫ୍ କମନ୍‌ସରେ ବଡ଼ଲାଟ ଲର୍ଡ ଓ୍ୱାରେନ୍ ହେଷ୍ଟିଙ୍ଗ୍‌ସଙ୍କ ଉପରେ ଚାଲିଥିବା ମକଦ୍ଦମା ସମୟରେ ପ୍ରଖ୍ୟାତ ଆଇନ ଅଧିବକ୍ତା ଏଡମଣ୍ଡ ବର୍କ କହିଥିଲେ ଯେ ମୁନ୍ନି ବେଗମ୍ ତାଡ଼ି, ଅଫିମ ଆଦି ମାଦକଦ୍ରବ୍ୟ ଚୋରା କାରବାର କରି ନିଜ ଧନଭଣ୍ଡାର ଭର୍ତ୍ତି କରୁଥିଲେ । ଇଉରୋପୀୟ ବ୍ରାଣ୍ଡି ଓ ବିଦେଶୀ ମଦ ଆମଦାନୀରେ ତାଙ୍କର ଭାଗିଦାରୀ ଥିଲା । ଏହି ଚୋରା କାରବାରରେ ଖୋଦ୍ ବଡ଼ଲାଟ୍ ମଧ୍ୟ ଜଣେ ଅଂଶୀଦାର ଥିଲେ ।

ମୀର ଜାଫରଙ୍କ ମୃତ୍ୟୁପରେ ବଡ଼ଲାଟ୍ ହେଷ୍ଟିଙ୍ଗସ୍ ମୁନ୍ନି ଜାନ୍‌ଙ୍କ ଲାଗି ଏକଲକ୍ଷ ଚାଳିଶ ହଜାର ଟଙ୍କା ବାର୍ଷିକ ପେନସନ୍ ଖଞ୍ଜି ଦେଇଥିଲେ । ଅନ୍ୟାନ୍ୟ ବେଗମଙ୍କ ଅପେକ୍ଷା ତାଙ୍କୁ ଉଚ୍ଚ ସ୍ଥାନ ଦିଆଇଥିଲେ । ଏଥିଲାଗି ମୁନ୍ନି ବେଗମ୍ ବଡ଼ଲାଟଙ୍କୁ ଦେଢ଼ ଲକ୍ଷଟଙ୍କା ଉତ୍କୋଚ ଦେଇଥିଲେ ଏବଂ ଏହା ପ୍ରମାଣିତ ହେଲାପରେ ହେଷ୍ଟିଙ୍ଗ୍‌ସଙ୍କୁ ପଦଚ୍ୟୁତ କରାଯାଇଥିଲା ।

ମୀର ଜାଫରଙ୍କ ମୃତ୍ୟୁପରେ ଲର୍ଡ଼ କ୍ଲାଇବଙ୍କୁ ପାଞ୍ଚଲକ୍ଷ ଟଙ୍କା ଉତ୍କୋଚ ଦେଇ ଜାଫରଙ୍କ ୧୫ ବର୍ଷିୟ ପୁଅ ନଜମୁଦ୍ଦୌଲାଙ୍କୁ ବଙ୍ଗଳାର ନବାବ୍ କରାଇ ନିଜେ ସମସ୍ତ ସଂପତ୍ତିର ଉତ୍ତରାଧିକାରିଣୀ ହୋଇଥିଲେ ମୁନ୍ନି ବେଗମ୍ । ଏକଥା 'ଲଣ୍ଡନ ଟାଇମ୍‌ସ'ରେ ମଧ୍ୟ ପ୍ରକାଶ ପାଇଥିଲା ।

ସବୁ ଇଂରେଜମାନେ ମୁନ୍ନି ବେଗମଙ୍କ ଭକ୍ତ ଥିଲେ । ଜାଫରଙ୍କ ମୃତ୍ୟୁ ପରେ ଲର୍ଡ କ୍ଲାଇବ୍ ତାଙ୍କୁ ସାନ୍ତ୍ୱନା ଦେବାକୁ ଯାଇ କହିଥିଲେ ଯେ– ''ଆମେ ସ୍ୱର୍ଗୀୟ ନବାବ୍ ସାହେବଙ୍କୁ ଫେରାଇ ଆଣି ନ ପାରିଲେ ମଧ୍ୟ ମୁଁ ଓ ସମସ୍ତ ଇଂରେଜ ଅଫିସର ନିଜକୁ ଆପଣଙ୍କର ପୁଅ ବୋଲି ମନେକରନ୍ତି ।



Digitized by srujanika@gmail.com

ଜାନୁୟାରୀ ୧୮୧୩ରେ ମୁନ୍ନି ବେଗମଙ୍କ ମୃତ୍ୟୁପରେ ସମଗ୍ର ଲଣ୍ଡନରେ ଶୋକର ଛାୟା ଖେଳି ଯାଇଥିଲା । ତାଙ୍କ ମୃତ୍ୟୁର ଚତୁର୍ଥ ଦିନ ଫୋର୍ଟ ଉଇଲିୟମରେ ତାଙ୍କୁ ୨୦ଟି ତୋପରେ ସଲାମୀ ଦିଆ ଯାଇଥିଲା । କଲିକତା, ଲଣ୍ଡନ, ମୁର୍ଶିଦାବାଦରେ ଦୁଇ ମିନିଟ୍ କାଳ ନୀରବ ପ୍ରାର୍ଥନା କରାଯାଇ ଉଇନିୟନ ଜେକ୍ ଅର୍ଦ୍ଧନମିତ କରାଯାଇଥିଲା ।

## ଅନ୍ଧାରୀ ରାତିର ରେଳଗାଡ଼ି :

ପ୍ରଖ୍ୟାତ ବଙ୍ଗଳା ଉପନ୍ୟାସିକ ଶରତଚନ୍ଦ୍ରଙ୍କ ଅଧିକାଂଶ ଜୀବନ ବେଶ୍ୟାମାନଙ୍କ ଗହଣରେ କଟିଥିଲା । ଏମାନଙ୍କ ବିଷୟରେ ସେ କହିଛନ୍ତି ଯେ, ଯଦିଓ ଅସହାୟତା, ବିବଶତା ଯୋଗୁଁ ଏମାନେ ନିଜ ସତୀତ୍ୱ ହରାଇଥାନ୍ତି, ହେଲେ ସେମାନଙ୍କ ଭିତରେ ନାରୀତ୍ୱର କୌଣସି ରକମ ଅଭାବ ନ ଥାଏ । ନାରୀତ୍ୱ ଦୃଷ୍ଟିରୁ ଜଣେ ବେଶ୍ୟା ସତୀତ୍ୱସମ୍ପନ୍ନ ନାରୀଠାରୁ ଅଧିକ ସମୃଦ୍ଧ, ଅଧିକ ଶ୍ରେଷ୍ଠ । ଏହି ନାରୀତ୍ୱର ପରାକାଷ୍ଠା ଯୋଗୁଁ ସେ ବେଶ୍ୟାକୁ 'ମହାନ୍' ବୋଲି ସ୍ୱୀକାର କରିଛନ୍ତି ।

ଉର୍ଦ୍ଦୁ କଥା ସମ୍ରାଟ ମଣ୍ଟୋଙ୍କ ଭାଷାରେ କହିଲେ:

''ଗଣିକା ନିଜର ଅନ୍ଧାରୀ ବେପାର ସତ୍ତ୍ୱେ ଆଲୋକିତ ଆତ୍ମାର ଅଧିକାରିଣୀ । ଏ କଥା ସତ ଯେ ପ୍ରତ୍ୟେକ ସ୍ତ୍ରୀ ବେଶ୍ୟା ହୋଇ ନ ଥାନ୍ତି; କିନ୍ତୁ ପ୍ରତ୍ୟେକ ବେଶ୍ୟା ଜଣେ ଜଣେ ନାରୀ । X X X ସେ ଭିଡ଼ ଭିତରେ ଥାଇ ମଧ୍ୟ ଏକାକୀ, ନିଃସଙ୍ଗ । ଅନ୍ଧାର ରାତିରେ ଚାଲୁଥିବା ସେ ଏମିତି ଏକ ରେଳଗାଡ଼ି, ଯିଏ ଯାତ୍ରୀମାନଙ୍କୁ ସେମାନଙ୍କ ଠିକଣା ଥାନରେ ପହଞ୍ଚାଇ ଦେଇ ନିଜେ ଗୋଟାଏ ମଜବୁତ ଛାତ ତଳେ ଖାଲି ଠିଆ ହୋଇଥାଏ । ଏକଦମ୍ ଖାଲି । ଧୂଆଁ ଓ ଧୂଳିରେ ଭର୍ତ୍ତି ହୋଇ ।''

ଜର୍ଜ ପଞ୍ଚମଙ୍କ ସିଂହାସନ ଆରୋହଣ ଉତ୍ସବରେ ଜାନକୀବାଈ (ଛପନ ଛୁରୀ) ଓ ଗୌହର ଜାନ୍ ସ୍ୱତନ୍ତ୍ର ଭାବରେ ନିମନ୍ତ୍ରିତ ହୋଇ ସଙ୍ଗୀତ ପରିବେଷଣ କରିଥିଲେ । ନୃତ୍ୟ, ସଙ୍ଗୀତ ସାଙ୍ଗକୁ କାବ୍ୟ, କବିତା, ଚିତ୍ରକଳା କ୍ଷେତ୍ରରେ ଏମାନଙ୍କ ଦାନ ଅତୁଳନୀୟ । ଲକ୍ଷ୍ନୌର ଜୋହରା ବାଈ ଓ ମୁଖ୍ତରୀ ବାଈ ଉର୍ଦ୍ଦୁ ଓ ପାର୍ସି ଭାଷାର ଉଚ୍ଚକୋଟୀର କବି ଥିଲେ ।



Digitized by srujanika@gmail.com

## ଭାଙ୍ଗିବା ନୁହେଁ ଘର ଗଢ଼ିବା କାମ ଆମର: ରକ୍ଷିତା :

ବ୍ୟକ୍ତିବିଶେଷଙ୍କ ଦ୍ୱାରା ବିଶେଷ ଭାବରେ ଭରଣପୋଷଣ ଦାୟିତ୍ୱ ନେଇ ସଂରକ୍ଷିତ ବେଶ୍ୟା ହିଁ ରକ୍ଷିତା । ତା'ର ବେଶ୍ୟାବୃତ୍ତି କେବଳ ତା'ର ମାଲିକ ସାଙ୍ଗରେ । ଦଶ ଜଣ ବିବାହିତ ପୁରୁଷ*ଙ୍କ ଏକମାତ୍ର ରକ୍ଷିତା ଫନୀ ହାର୍ଷ୍ଟଙ୍କ ଡାଏରୀରୁ ଦେହ-ବେପାରର ଅନେକ ବ୍ୟକ୍ତିଗତ କାରଣ ଜଣାପଡ଼େ, ଯାହା ପୁରୁଷକୁ ପର ସ୍ତ୍ରୀ ଗମନ ଲାଗି ଉସ୍‌କାଇ ଥାଏ ।

ଏହି ମହିଳା ଜଣକ ଥିଲେ ଅତ୍ୟନ୍ତ ସୁନ୍ଦରୀ, ବୁଦ୍ଧିମତୀ, ଚତୁରୀ ଓ ସମ୍ବେଦନଶୀଳ । ସମୁଦ୍ର ପରି ବିଶାଳ ଉଦାରତାର ଅଧିକାରିଣୀ ଫନି ପାଶ୍ଚାତ୍ୟର ଏକ ଖୁବ୍ ବଡ଼ ସହରରେ ରହୁଥିଲେ । ସେ କାଳରେ ସେ ଜଣେ ଅନିନ୍ଦ୍ୟ ସୁନ୍ଦରୀ ଭାବରେ ଥିଲେ ଖୁବ୍ ଖ୍ୟାତ । ସାମାଜିକ ଭାବରେ ତାଙ୍କୁ ପତିତା ବୋଲି ମନେ କରାଗଲେ ମଧ୍ୟ ସେ ନିଜ ସମ୍ପର୍କରେ କହନ୍ତି :

''ଆପାତଃ ଦୃଷ୍ଟିରେ ମୁଁ ନିଜକୁ ରକ୍ଷିତା ବୋଲି ମନେ କରେନା କିମ୍ବା କିଛି ଅସତ୍ କାମ କରିଛି ବୋଲି ଭାବେନା । ଆଜି ପର୍ଯ୍ୟନ୍ତ ମୁଁ କାହାରି ଘର ଭାଙ୍ଗି ନାହିଁ ବରଂ ଏକାଧିକ ଘର ଭାଙ୍ଗିବାରୁ ରକ୍ଷା କରିଛି ।''

ଫନୀଙ୍କ ଡାଏରୀରୁ ଜଣାପଡ଼େ ଯେ ରକ୍ଷିତାମାନେ ଯୌନ ଆକର୍ଷଣର ମଧୁଭାଣ୍ଡ ନୁହଁନ୍ତି । ରକ୍ଷିତାମାନଙ୍କର ଦୈହିକ ଆକର୍ଷଣ ବା ଯୌନ କଳକୌଶଳର ମୋହ ନୁହେଁ, ସ୍ତ୍ରୀମାନଙ୍କ ବ୍ୟବହାର ଦ୍ୱାରା ହିଁ ସ୍ୱାମୀମାନେ ରକ୍ଷିତାମାନଙ୍କର ଆଶ୍ରୟକୁ ଛୁଟି ଆସନ୍ତି । ଏକଥା ମଧ୍ୟ ସତ ଯେ, ବିବାହ ସମ୍ପର୍କ ବାହାରେ ଅନ୍ୟ ସଙ୍ଗୀ ସହିତ ଯୌନ ସମ୍ପର୍କ ସ୍ଥାପନ କରିବାକୁ ନାରୀ ଅପେକ୍ଷା ପୁରୁଷ ହିଁ ବେଶି ଉତ୍ସୁକ ଥାଏ । ସେମାନେ ଯୌନ କାମନା ତୃପ୍ତିଠାରୁ ରକ୍ଷିତାଠାରୁ ଆହୁରି ବେଶୀ କିଛି ଚାହାନ୍ତି । ବ୍ୟକ୍ତିତ୍ୱବୋଧ, କୌଣସି କାମ ପାଇଁ ପ୍ରଶଂସା ଲାଭର ଆକାଂକ୍ଷା, ସ୍ନେହ ସୋହାଗ ପାଇବାର କାମନା, ପ୍ରିୟ ସଙ୍ଗ ଲାଭର ଆକାଂକ୍ଷା ହିଁ ପୁରୁଷକୁ ରକ୍ଷିତାଗାମୀ କରେ । ସ୍ତ୍ରୀମାନେ ସେମାନଙ୍କ ସ୍ୱାମୀଙ୍କର ଏହି ସ୍ୱାଭାବିକ ଆକାଂକ୍ଷା ପୂରଣ କରିବାକୁ ବେଶ୍ ବ୍ୟର୍ଥ ହେଉଥିବା କଥା ଫନୀ ଦର୍ଶାଇଛନ୍ତି ।

---

* ଜଣେ ଡାକ୍ତର, ଜଣେ ଓକିଲ, ଜଣେ ପ୍ରଖ୍ୟାତ ଖେଳାଳି, ଜଣେ ଉଚ୍ଚ ପଦସ୍ଥ ସରକାରୀ ଅଫିସର, ଜଣେ ସାହିତ୍ୟିକ, ଜଣେ ସାମ୍ବାଦିକ, ଜଣେ ଇଞ୍ଜିନିୟର, ଜଣେ ବଡ଼ ବ୍ୟବସାୟୀ ଓ ଦୁଇ ଜଣ ସାଧାରଣ ଚାକିରିଆ ।



Digitized by srujanika@gmail.com

ଫନୀଙ୍କ ଡାଏରୀରୁ ଜଣାପଡ଼େ ଯେ ମହିଳା ବା ସ୍ତ୍ରୀମାନଙ୍କର ଭାବାଳୁ ରୋମାଣ୍ଟିକତାଠାରୁ ପୁରୁଷ ଅନେକ ବେଶି ରୋମାଣ୍ଟିକ ଏବଂ ନାରୀ ନିକଟରେ ନିଜ ବ୍ୟକ୍ତିତ୍ୱ ଓ ବ୍ୟକ୍ତି ସ୍ୱାତନ୍ତ୍ରତାର ପୂର୍ଣ୍ଣ ମର୍ଯ୍ୟାଦା ସହ ପୁରୁଷ ପ୍ରତିଷ୍ଠାର କାମନା ରଖେ । ପ୍ରତ୍ୟେକ ଦିନକୁ ଜୀବନରେ ପୃଥକ୍ ଦିନ ଭାବେ ଜୀବନଯାପନ କରିବାକୁ ଚାହେଁ, ଏକରସତାକୁ ଭଙ୍ଗ କରିବାକୁ ଚାହେଁ । ଏବଂ ରକ୍ଷିତା ପାଖରେ ମାନସିକ କ୍ଳାନ୍ତି ଦୂର କରି, ନୂତନ ଶକ୍ତି ଓ ଉତ୍ସାହ ଲାଭ କରି ଘରକୁ ଫେରେ ।

ଫନୀ କହନ୍ତି:

"ରକ୍ଷିତାମାନେ ସେମାନଙ୍କ ପ୍ରେମିକାମାନଙ୍କ ସ୍ତ୍ରୀଠାରୁ ତାଙ୍କର ସ୍ୱାମୀଙ୍କୁ ଛଡ଼ାଇ ନେବାକୁ ଚାହାନ୍ତି ନାହିଁ । ବରଂ ସ୍ତ୍ରୀମାନେ ହିଁ ଜୋର୍ କରି ସେମାନଙ୍କ ସ୍ୱାମୀମାନଙ୍କୁ ରକ୍ଷିତାମାନଙ୍କ ହାତରେ ସମର୍ପଣ କରିଦିଅନ୍ତି ସେମାନଙ୍କ ବ୍ୟବହାର ଦ୍ୱାରା ।"

**ଜାପାନୀ ସୁନ୍ଦରୀ: ଗିସା :**

ବିଦେଶୀ ପର୍ଯ୍ୟଟକମାନଙ୍କ ଏକ ପ୍ରଚଳିତ ଧାରଣା ରହିଛି ଯେ- ଗିସାମାନେ ହେଉଛନ୍ତି ଜାପାନର ଏକ ଅଭିଜାତ ଶ୍ରେଣୀୟ ପତିତା । ଦାରିଦ୍ର୍ୟ ଯୋଗୁଁ ଏମାନଙ୍କୁ ପତିତାଳୟରେ ବିକା ହୋଇଥାଏ ଏବଂ ଏମାନେ ପତିତାମାନଙ୍କ ପରି ଲଜ୍ଜାକର ଜୀବନଯାପନ କରିଥାନ୍ତି ।

କିନ୍ତୁ ଏଭଳି ଧାରଣା ଭ୍ରମାତ୍ମକ । ପ୍ରକୃତ ପକ୍ଷରେ ଗିସା ହେଉଛନ୍ତି ଏକ ଅତ୍ୟନ୍ତ ଅଭିଜାତ ନାରୀ ସଂପ୍ରଦାୟ । ବଡ଼ ବଡ଼ ରେଷ୍ଟୋରାଁରେ ଏମାନେ ମାନ୍ୟଗଣ୍ୟ ଅତିଥିମାନଙ୍କର ସଙ୍ଗୀ ହୁଅନ୍ତି । ଏମାନେ ଅତ୍ୟନ୍ତ ଶାଳୀନ, ଭଦ୍ର, ବ୍ୟବହାର କୁଶଳ । କବିତା ଆବୃତ୍ତି, ନୃତ୍ୟ ସାଙ୍ଗକୁ ତା'ର ବାଦ୍ୟରେ ମଧ୍ୟ ଏମାନେ ପ୍ରବୀଣ । ଅତିଥିମାନେ ଯେପରି ତୃପ୍ତିସହ ଭୋଜନ ଶେଷ କରିବେ ସେଇଟା ଏମାନଙ୍କର ପ୍ରଧାନ ଦାୟିତ୍ୱ ।

ପାଶ୍ଚାତ୍ୟ ଦେଶବାସୀ ବନ୍ଧୁବାନ୍ଧବ ଓ ବ୍ୟବସାୟ ସହଯୋଗୀମାନଙ୍କୁ ଘରକୁ ନିମନ୍ତ୍ରଣ କରି ଗୃହସ୍ୱାମିନୀ ହାତରେ ଅତିଥି ପରିଚର୍ଯ୍ୟାର ଭାର ଦେଉଥିଲାବେଳେ ଜାପାନରେ ଏହା କ୍ୱଚିତ ଦେଖାଯାଏ । ଜାପାନରେ ଅତିଥିଚର୍ଯ୍ୟା ଅଧିକାଂଶତଃ ଟି ହାଉସ୍‌ରେ କରାଯାଇଥାଏ ।

ଗିସାମାନେ ବିଶିଷ୍ଟ ଟି ହାଉସମାନଙ୍କରେ କାମ କରନ୍ତି । ଜାପାନର ସାମାଜିକ ରୀତି ଅନୁସାରେ ପ୍ରକାଶ୍ୟରେ ଯଦି କୌଣସି ଭଦ୍ରବ୍ୟକ୍ତିଙ୍କୁ ଜଣେ ଗିସା ସଙ୍ଗେ ଦେଖାଯାଏ, ତେବେ ନିଜ ସ୍ତ୍ରୀ ବା ସମାଜ ନିକଟରେ ଭଦ୍ରଲୋକଙ୍କ ଲଜ୍ଜିତ ହେବାର ନଥାଏ । ଗିସାମାନଙ୍କ ପାଖକୁ ଯିବାକୁ ହେଲେ ସେମାନଙ୍କ ଆସ୍ଥାଭାଜନ ହେବାକୁ ପଡ଼ିଥାଏ ବା ସାମାଜିକ ମର୍ଯ୍ୟାଦା ସମ୍ପନ୍ନ



Digitized by srujanika@gmail.com

ବ୍ୟକ୍ତିଙ୍କ ସୁପାରିଶ ଲୋଡ଼ା ହୋଇଥାଏ । ସେମାନଙ୍କ ପୋଷାକ ପରିଚ୍ଛଦ ମୂଲ୍ୟବାନ ଓ ସୌଖୀନ ହୋଇଥାଏ ।

ଲୋକପ୍ରିୟ ଗିସାମାନଙ୍କର ଅନେକ ପୃଷ୍ଠପୋଷକ ରହିଥାନ୍ତି । ଏମାନେ ପତିତା ହୋଇ ନ ଥିଲେ ମଧ୍ୟ ବେଳେବେଳେ ଅର୍ଥ ବିନିମୟରେ ନିଜର ପ୍ରିୟ ପୃଷ୍ଠପୋଷକମାନଙ୍କର ବା ତାଙ୍କର ପରିଚିତ ବନ୍ଧୁବାନ୍ଧବମାନଙ୍କର ଶଯ୍ୟାସଙ୍ଗିନୀ ହୋଇଥାନ୍ତି । ଅନେକ ଗିସା ଏଥିଲାଗି ପ୍ରକାଶ୍ୟରେ ସ୍ୱୀକୃତ ନୁହନ୍ତି । ମାନସିକ ଆନନ୍ଦ ଦାନ ଓ ମନୋରଞ୍ଜନ ଏମାନଙ୍କ ପ୍ରଧାନ ପେସା ।

## ଜାନସର ବାବର୍‌ର ମୋହିନୀମାନେ :

ବଡ଼ ବିଚିତ୍ର ଏ ଭଲପାଇବାର ଦୁନିଆଁ । ହଁ, ଆଜିର ଶତାବ୍ଦୀରେ ଠିକ୍ ଗୋଟାଏ ସ୍ୱପ୍ନ ଜୀବନ୍ତ ଜାନସର ବାବର୍‌ର ମୋହିନୀମାନେ ।

ଡେରାଡୁନ୍‌ରୁ ୫୪ ମାଇଲ ଉତ୍ତରକୁ ଚକରାତା । ତା'ର ପାଞ୍ଚ ମାଇଲ ଆଗକୁ ଗଲେ ଜାନସର ବାବର୍‌ର ସୀମା । ଗୋଟାଏ ପଟେ ଗଢ଼ୱାଲ ଓ ଆରପଟେ ହିମାଳୟର କୋର୍ଟ ଖାଇର ଇଲାକା । ସ୍ଥାନୀୟ ଲୋକଙ୍କ ଭାଷାରେ କହିଲେ– ''ସେଠି ଓଲଟ ଗୋଡ଼ବାଲୀ ଜିନ୍ନୀମାନେ ରହନ୍ତି । ସେମାନେ ସିଧା ଗୋଡ଼ବାଲୀଙ୍କ ରୂପ ଧରି ଯାତ୍ରୀମାନଙ୍କୁ ମୋହିତ କରନ୍ତି ଓ ତାକୁ ମେଣ୍ଢା କରି ନିଜ ଘରର ଦର୍ଜା ଆଗରେ ବାନ୍ଧି ରଖନ୍ତି ।'' ପାହାଡ଼ି ମୋହିନୀମାନଙ୍କର ଏ ଏକ ଅନ୍ତରଙ୍ଗ ପରିଚୟ ।

ସେଠାରେ ଶାଶୁଘରେ ରହୁଥିବା ବୋହୂମାନଙ୍କୁ ରେହାଁତଡ଼ି କହନ୍ତି । ବାପଘରେ ଥିବା ଅବିବାହିତ ଝିଅକୁ ଦେହାଁତଡ଼ି କହନ୍ତି । ରେହାଁତଡ଼ିମାନେ ବାପଘରକୁ ଆସିଲେ ସେଠି ଥିବା ଯାଏ ଦୋହାଁତଡ଼ି ହୋଇଯାଆନ୍ତି । ରେହାଁତଡ଼ିମାନଙ୍କ ପରପୁରୁଷ ଦର୍ଶନ ନିଷିଦ୍ଧ । ସବୁବେଳେ ସେମାନଙ୍କ ମୁଣ୍ଡରେ ହାତେ ଲମ୍ବର ଓଢ଼ଣା । ଦେହାଁତଡ଼ିମାନଙ୍କ ମୁଣ୍ଡ ଖୋଲା । ପରପୁରୁଷ, ଗାଁ ବାଟ ଦେଇ ଯାଉଥିବା ଯାତ୍ରୀକୁ ରାତିକର ସମସ୍ତ ସୁଖ ଦେବା ସେମାନଙ୍କ ଧାର୍ମିକ କର୍ତ୍ତବ୍ୟ ।

ପାହାଡ଼ି ଗାଁ କୂଅରୁ ପାଣି କାଢୁଥିବା ଝିଅମାନଙ୍କୁ ଯେକୌଣସି ପଥିକ ପଚାରିପାରେ ଯେ ସେମାନଙ୍କ ମଧ୍ୟରେ ଦେହାଁତଡ଼ି କିଏ ? କେବେ କୌଣସି ପଥିକର ଅନୁରୋଧକୁ ଉପେକ୍ଷା କରେ ନାହିଁ କୌଣସି ଦେହାଁତଡ଼ି । ତାକୁ ଆଦରରେ ଘରକୁ ଡାକି ନିଏ । ଗରମ ପାଣିରେ ପାଦ ଧୋଇ ପଣତରେ ପୋଛି ଦିଏ । ଖୁମାନୀ ତେଲରେ ଗୋଡ଼ ହାତ ଘଷି ଦିଏ । ଭଲ ଘିଅରେ ରାନ୍ଧି ଉତ୍ତମ ଭୋଜନ ଖୁଆଏ ଏବଂ ରାତିରେ ଗୃହିଣୀ ପରି ତା'ସହ ଶୋଇ ପଥିକକୁ



Digitized by srujanika@gmail.com

ନିଜ ଦେହର ଉତ୍ତାପ ଦାନ କରେ ଏବଂ ଆରଦିନ ସକାଳେ ତାକୁ ଖୁଆଇ ପିଆଇ ବିଦାୟ ଦିଏ ସଜଳ ଆଖିରେ । ବିନିମୟରେ ପଥିକଠାରୁ କୌଣସି ପ୍ରକାର ଅର୍ଥ ବା ଉପହାର ସ୍ୱୀକାର କରେ ନାହିଁ କେବେ । ଏହା ତା' ସମାଜରେ ଧର୍ମବିରୋଧୀ ।

ରେହାଁତଡ଼ିମାନେ ବାପଘରକୁ ଆସିଲେ ସେମାନଙ୍କୁ ମଧ ଦେହାଁତଡ଼ି ସାଜି ସେ ଧାର୍ମିକ ଦାୟିତ୍ୱ ତୁଲାଇବାକୁ ପଡ଼ିଥାଏ ।

ଅର୍ଥସର୍ବସ୍ୱ ଦୁନିଆଁର ବହୁ ଦୂରରେ ଏ ସରଳ ନିଶ୍ଛଳତାର ବିମୋହିତ ପାହାଡ଼ି ସଂସାର, ଠିକ୍ ଗୋଟାଏ ମିଠା ସ୍ୱପ୍ନ ପରି ।

**ପ୍ଲେଟୋନିକ୍ ଲଭ :**

ଦାର୍ଶନିକ ପ୍ଲେଟୋ ପୁରୁଷ– ପୁରୁଷ ମଧରେ ପ୍ରେମକୁ ଅତ୍ୟନ୍ତ ଉଚ୍ଚକୋଟୀର ପ୍ରେମର ସଂଜ୍ଞ୍ୟା ଦେଇଛନ୍ତି । ତାଙ୍କର 'ସମ୍ବାଦ' ସିମ୍ପୋଜିୟମ୍‌ରେ ସେ ସମଲୈଂଗିକତାକୁ ଅଭୂତପୂର୍ବ ଉଚ୍ଚ ସ୍ଥାନରେ ସ୍ଥାନିତ କରିଛନ୍ତି:

''ଯଦି ସମଲୈଙ୍ଗିକମାନଙ୍କର ଏକ ସେନାବାହିନୀ ଗଠନ କରାଯାଏ, ସେଇଟା ଏତେ ବିଶାଳ ହେବ ଯେ ତା' ସାହାଯ୍ୟରେ ସମଗ୍ର ବିଶ୍ୱକୁ ଜିଣି ହେବ ।''

ସମଲୈଙ୍ଗିକମାନଙ୍କ ସେନାବାହିନୀ ''ଥିବାନ୍ ସେକ୍ରେଡ୍ ବେଣ୍ଡ ଟ୍ରୁପ୍' ଅନେକ ଯୁଦ୍ଧ ଜୟ କରିଥିଲେ । ସ୍ପାରଟନ୍‌ର ସାମରିକ ବାହିନୀ ମଧ ଏକ ସମଲୈଙ୍ଗିକ ସାମରିକ ସଙ୍ଗଠନ ଥିଲା । ସାମରିକ ବାହିନୀର ଜବାନମାନେ କଠୋର ଶୃଙ୍ଖଳା ଭିତରେ ଅନେକ ଦୂରରେ ସ୍ତ୍ରୀ ସୁଖରୁ ବଞ୍ଚିତ ହୋଇ ରହିଥିବା ଅବସ୍ଥାରେ ସେମାନଙ୍କ ଭିତରେ ସମଲୈଙ୍ଗିକତା ପ୍ରକାଶ ପାଇବାରେ ବୈଚିତ୍ର୍ୟ ବୋଲି କିଛି ନାହିଁ ।

ଏହି ସମଲୈଙ୍ଗିକତାର ଇତିହାସ ଅତ୍ୟନ୍ତ ପ୍ରାଚୀନ । 'ଓଲ୍ଡ ଟେଷ୍ଟାମେଣ୍ଟର' ଗିଲ ଗମେଶ୍‌ର ମହାଗାଥାରୁ ଦୁଇ ଯୁବକ ଭାଇ ହାବିଲ୍-କାବିଲ୍ ମଧରେ ଏକା ସଙ୍ଗେ ଶୋଇଥିବାବେଳେ ସମଲୈଙ୍ଗିକ ସମ୍ପର୍କର ସୂଚନା ମିଳେ ।

କେଇ ଶତାବ୍ଦୀ ପୂର୍ବେ ଚର୍ଚ୍ଚ ସ୍ତ୍ରୀ ସମାଗମକୁ ପାପ ବୋଲି ଘୋଷଣା କରିଥିଲା । ତା' ଫଳରେ ପୁରୁଷ-ପୁରୁଷ ମଧରେ ଶାରୀରିକ ସମ୍ପର୍କର ସୂତ୍ରପାତ ହେଲା । ସୃଷ୍ଟିରେ ସୃଷ୍ଟିବିରୋଧୀ କାର୍ଯ୍ୟ ମୁଣ୍ଡ ଟେକିଲା । ସ୍ତ୍ରୀ-ପୁରୁଷର ପାରସ୍ପରିକ ଆକର୍ଷଣକୁ ଖତମ୍ କରିବା ଲାଗି ବିଭିନ୍ନ ଉପାୟ କରାଗଲା । ହେଲେ ତାହା ସଫଳ ହୋଇପାରିଲା ନାହିଁ । ଫଳରେ ପୁରୁଷ ବେଶ୍ୟାବୃତ୍ତି ଓ ପୁଂବ୍ୟଭିଚାର ବଢ଼ି ଚାଲିଲା । ଏଥିରେ ବିଚଳିତ ହୋଇ ଚର୍ଚ୍ଚ କେତେକ ଏଭଳି ଅପରାଧୀଙ୍କୁ ଦଣ୍ଡ ସ୍ୱରୂପ ଜୀଅନ୍ତା ପୋଡ଼ିଦେଲା । ଏହାର ମଧ କୌଣସି ପ୍ରଭାବ ପଡ଼ିଲା ନାହିଁ । ହେଲେ



Digitized by srujanika@gmail.com

ଅବସ୍ଥା ଯେତେବେଳେ ଅସମ୍ଭାଳ ହୋଇ ଉଠିଲା, ଚର୍ଚ୍ଚ ସେତେବେଳେ ନିଜର ଭୁଲ ବୁଝିପାରି ପୂର୍ବାବସ୍ଥା ଫେରାଇ ଆଣିବାକୁ ଆଇନ ପ୍ରଣୟନ କଲା । ହେଲେ ସେତେବେଳେକୁ ଲେଡ଼ିଗୁଡ଼ କହୁଣିକୁ ବୋହିଯାଇ ସାରିଥାଏ । ପୂର୍ବାବସ୍ଥା ଭୟାବହ ଭାବରେ ଫେରି ଆସିଥିଲେ ମଧ୍ୟ ଏକ ନୂଆ ସ୍ୱାଦର ସୁରାକ ଲୋକଙ୍କୁ ଦେଇ ସାରିଥାଏ ।

ଇସଲାମ ଧର୍ମର ପ୍ରାରମ୍ଭିକ କାଳରେ ପୁରୁଷ ବେଶ୍ୟାବୃତ୍ତି ଏତେ ବ୍ୟାପକ ହୋଇ ରହିଥିଲା ଯେ କୋରାନ୍‌ରେ ଏହାକୁ ପାପ ବୋଲି ଘୋଷଣା କରିବାକୁ ପଡ଼ିଲା । ତେବେ ଆରବରେ ଏବେ ମଧ୍ୟ ପୁରୁଷ ବେଶ୍ୟାଙ୍କ ସଂଖ୍ୟା ସବୁଠୁ ବେଶୀ । ଆରବ ଶେଖମାନେ ଏହାର ମୁଖ୍ୟ କାରପଟ୍‌ଦାର ।

ନ୍ୟୁଗିନିରେ ବ୍ୟଭିଚାର ଲାଗି ଦଣ୍ଡ ବିଧାନ କରାଯାଇଥିଲେ ମଧ୍ୟ ପୁରୁଷ ବେଶ୍ୟାବୃତ୍ତି ଲାଗି କୌଣସି ରକମ ବାଧା ନିଷେଧ ନାହିଁ । ପୂର୍ବ ଆମେରିକାର ଇଣ୍ଡିଆନ ଓ ନ୍ୟୁ ହେବ୍ରାଇଡ୍‌ସର ନମ୍ଭାସମାନେ ବିବାହିତଙ୍କ ପରି ଏକାଠି ଘର କରି ରହିପାରନ୍ତି । ଇଂଲଣ୍ଡରେ ପୁରୁଷ ବେଶ୍ୟାମାନଙ୍କ ଏକ ନିଜସ୍ୱ ସମାଜ ରହିଛି । ତାଙ୍କର ନିୟମିତ ପତ୍ରିକା ମଧ୍ୟ ପ୍ରକାଶ ପାଉଛି । କେଇ ବର୍ଷ ତଳେ ଫ୍ରାନ୍‌ସର ଜଣେ ବ୍ୟକ୍ତି ଅନ୍ୟ ଜଣେ ପୁରୁଷ ସହ ଆଇନସମ୍ମତ ବିବାହ କରିଥିଲା । ଯୁକ୍ତରାଷ୍ଟ୍ରରେ 'ଗେ ଲିବରେସନ ମୁଭମେଣ୍ଟ' ସମଲୈଙ୍ଗିକତାର ସାମାଜିକ ପ୍ରତିଷ୍ଠା ନିମନ୍ତେ ସମଲୈଙ୍ଗିକ ସଂପ୍ରଦାୟ ଦ୍ୱାରା ବରାବର ଦାବି କରିଆସୁଛି ।

ଭାରତରେ ମୋଗଲ ଯୁଗରେ ପୁରୁଷ ବେଶ୍ୟାବୃତ୍ତିର ଅଧିକ ପ୍ରଚଳନ ଥିଲା । ଭାରତରେ ଇଂରେଜମାନେ ମଧ୍ୟ ଏଥିପ୍ରତି ଖୁବ୍ ଅନୁରକ୍ତ ଥିଲେ । ସେତେବେଳେ ଲକ୍ଷ୍ନୌ ଏଥିଲାଗି କୁଖ୍ୟାତ ଥିଲା । ସେଠାରେ ଏଥିଲାଗି ଦଶବର୍ଷ ବା ତା'ଠୁ କମ୍ ବୟସର ପିଲାମାନଙ୍କୁ ବ୍ୟବହାର କରାଯାଉଥିଲା ।

ଉନବିଂଶ ଶତାବ୍ଦୀରେ ଭାରତରେ ପୁରୁଷ ବେଶ୍ୟାର ବିବରଣୀ ପ୍ରଥମ କରି ସାର୍ ରିଚାର୍ଡ୍ ବର୍ଟନଙ୍କ ଭ୍ରମଣ କାହାଣୀ 'ଦ ଏରୋଟିକ୍ ଟ୍ରାଭେଲର'ରେ ଦେଖିବାକୁ ମିଳେ । ଇଷ୍ଟ ଇଣ୍ଡିଆ କମ୍ପାନୀର ସିଂଧର 'ତତ୍‌କାଳୀନ ଗଭର୍ଣ୍ଣର ସାର୍ ଚାର୍ଲସ ନେପିୟରଙ୍କ ଆଦେଶରେ ସାର ବର୍ଟନ ସିନ୍ଧର ବେଶ୍ୟାଳୟମାନ ପରୀକ୍ଷା କଲାବେଳେ ପୁରୁଷ ବେଶ୍ୟା ଥିବା କଥା ଜଣାପଡ଼ିଛି ।

—''ସିନ୍ଧରେ ବେଶ୍ୟମାନଙ୍କ ଦର କମ୍ ହେବାର ଗୋଟାଏ କାରଣ ହେଲା ସମଲୈଙ୍ଗିକ ବେଶ୍ୟାବୃତ୍ତି । ଏଭଳି ପୁରୁଷ ବେଶ୍ୟାଙ୍କ ମୂଲ୍ୟ ଥିଲା ଖୁବ୍ ବେଶୀ ।'' ପଶୁ ଓ ଅନ୍ୟାନ୍ୟ ଇତର ଜୀବଜନ୍ତୁଙ୍କ ସହ ମଧ୍ୟ ସହବାସକାରୀ ଅନେକ ମୁନି ଋଷିଙ୍କ କାହାଣୀ ଆମ ଦେଶର ପୌରାଣିକ କାହାଣୀରେ ଦେଖିବାକୁ ମିଳେ ।



Digitized by srujanika@gmail.com

ପ୍ରାଚୀନ ଗ୍ରୀସ୍‌ରେ ମଧ୍ୟ ଏ ପ୍ରଥା ଥିଲା । ଜଣେ ପିଲା ଯୁବାବସ୍ଥାରେ ନ ପହଞ୍ଚିଲା ଯାଏଁ ତାକୁ ଛୁଇଁବାକୁ ପ୍ରାଚୀନ ରୋମ୍‌ରେ ଆଇନଗତ କଠୋର କଟକଣା ରହିଥିଲା ।

ପ୍ରସିଦ୍ଧ ମନୋବୈଜ୍ଞାନିକ ସିଗମଣ୍ଡ ପ୍ରୟଡ୍ ଏ ସମ୍ପର୍କରେ କହନ୍ତି:

"Childhood remain active in the Homo and poison his adult relationship with all womanhood"

ଏଡଲର କହନ୍ତି ଯେ ସେକ୍ସର ବିଫଳତା ହିଁ ଏ ସମ୍ପର୍କର କାରଣ । ଏଫ୍.ଜେ. କଲମେନଙ୍କ ମତରେ କେତେକ ସ୍ଥଳରେ ଏହା ସହଜାତ ଓ କେତେକ କ୍ଷେତ୍ରରେ ଆହରିତ ।

ପ୍ରଖ୍ୟାତ ଫରାସୀ ଲେଖକ ଜ୍ୟାଁ ଜେନେ, ଇଂରାଜୀ କବି, ନାଟ୍ୟକାର ସେକ୍ସପିୟର, ଜ୍ଞାନପୀଠ ପୁରସ୍କାର ବିଜେତା ଉର୍ଦ୍ଦୁ ମହାକବି ଫିରାକ ଗୋରଖପୁରୀ, ସମଲୈଙ୍ଗିକତାର ଶିକାର ଥିଲେ । ଓସକାର ଓସକାର ଓ୍ୱାଇଲ୍‌ଡଙ୍କ ବିରୁଦ୍ଧରେ ଏଥିପାଇଁ ବିଶ୍ୱବିଖ୍ୟାତ ମକଦ୍ଦମା ହୋଇଥିଲା । ଏମାନଙ୍କ ମଧ୍ୟରୁ କେତେକ ସକ୍ରେଟିସ୍‌ଙ୍କ ପରି ଉଭୟକାମୀ ମଧ୍ୟ ହୋଇଥାନ୍ତି । ସେ ସ୍ତ୍ରୀ ପୁରୁଷ ଉଭୟଙ୍କ ସଙ୍ଗେ ସମାନ ସଂପର୍କ ରଖିଥାନ୍ତି । ସମଲୈଙ୍ଗିକତାର ଶିକାର 'ଲେସବିଏନ' ମଧ୍ୟ ଅଛନ୍ତି । ଏମାନେ ହେଲେ ସ୍ତ୍ରୀ ଯେଉଁମାନେ ସ୍ତ୍ରୀମାନଙ୍କ ସହ ସମଲୈଙ୍ଗିକ ସମ୍ପର୍କ ରଖନ୍ତି । ସେହିପରି ସମଲୈଙ୍ଗିକ ମୈଥୁନରେ ହିଂଜଡାମାନେ ମଧ୍ୟ ଏକ ମୁଖ୍ୟ ଭୂମିକା ଗ୍ରହଣ କରନ୍ତି । ଏମାନଙ୍କ ଲଜ୍ଜାଶୀଳତା, ବାକ୍ ଚାତୁରୀ, ଚଞ୍ଚଳତା, ସହଜରେ ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କରିଥାଏ ।

## ବିରୋଧର ବିରୋଧ :

ସମାଜର ଏକ ଅବିଚ୍ଛେଦ୍ୟ ଅଙ୍ଗରେ ବେଶ୍ୟାବୃତ୍ତି ପରିଣତ ହେଲାପରେ ମଧ୍ୟ ବେଶ୍ୟାମାନଙ୍କୁ ସାମାଜିକ ଅଧିକାରରୁ ବଞ୍ଚିତ ରଖାଯିବା ଫଳରେ ବିରୋଧର ତୋଫାନ ମଧ୍ୟ ଉଠିଛି । ଏ କ୍ଷେତ୍ରରେ ଫ୍ରାନ୍‌ସର ବେଶ୍ୟା ସମାଜ ଅଗ୍ରଣୀ ଭୂମିକା ଗ୍ରହଣ କରି ଆନ୍ଦୋଳନାତ୍ମକ ପଛାରେ ନେତୃତ୍ୱ ନେଇଛି ।

ସେମାନଙ୍କ ସଙ୍ଗଠନର ଅଧକ୍ଷା ଅବ୍ରାନା ବାନଫାନ୍ତିକଙ୍କ ନେତୃତ୍ୱରେ ପେରିସ୍‌ର ବେଶ୍ୟାମାନେ ସେମାନଙ୍କ ମାନବିକ ଅଧିକାର ଲାଗି ପ୍ରତ୍ୟକ୍ଷ ସଂଗ୍ରାମରେ ଅବତୀର୍ଣ୍ଣ । ସେମାନଙ୍କ ସ୍ଲୋଗାନ ହେଲା: ଅନ୍ୟ ସ୍ତ୍ରୀମାନେ ଯେଭଳି ଭାବରେ ବଞ୍ଚୁଛନ୍ତି, ସେହିପରି ଭାବରେ ବଞ୍ଚ ।''

୧୯୭୫ରେ ପେରିସ୍‌ର ବେଶ୍ୟାମାନେ ଏକ ସମିତି ଗଠନ କରିଛନ୍ତି । ସେମାନଙ୍କୁ ଝିଅବୋହୂଙ୍କ ପରି ବଞ୍ଚିବାକୁ ଦେବା ଲାଗି ଦାବି କରି ଏହି ସମିତି ପକ୍ଷରୁ ସେମାନେ ଫ୍ରାନ୍‌ସ ସରକାରଙ୍କୁ ଏକ ପାଞ୍ଚ ଦଫା ଦାବି ସମ୍ବଳିତ ମାନପତ୍ର ଦେଇଥିଲେ । ସେମାନଙ୍କ ଦାବି ଥିଲା—



Digitized by srujanika@gmail.com

୧ । ଆମକୁ ସାଧାରଣ ଝିଅବୋହୂଙ୍କ ସମ୍ମାନ ଦିଆଯାଉ ।

୨ । ଯେଉଁମାନେ ବେଶ୍ୟାବୃତ୍ତି ଛାଡ଼ିବା ଲାଗି ଆଗ୍ରହୀ, ସେମାନଙ୍କର ପଥର ସବୁ ବାଧାବିଘ୍ନ ଦୂର କରାଯାଉ ।

୩ । ବେଶ୍ୟାବୃତ୍ତି ଆଇନତଃ ବୈଧ କରାଯାଇଛି ଓ ଆମଠାରୁ ନିୟମିତ ଭାବରେ ଆୟକର ନିଆଯାଉଛି । ତଥାପି ପୋଲିସ୍ ଓ ଦଲାଲମାନେ ଆମ ଉପରେ ଶୋଷଣ ଚଳାଇଛନ୍ତି । ଏହି ଶୋଷଣ ବନ୍ଦ କରାଯାଉ ।

୪ । ଆୟକର ଦେଉଥିବା ନାଗରିକମାନେ ଯେଉଁ ସୁବିଧା ସୁଯୋଗ ଉପଭୋଗ କରୁଛନ୍ତି, ସେ ସମସ୍ତ ସୁବିଧା ସୁଯୋଗ ଆମକୁ ମଧ୍ୟ ଯୋଗାଇ ଦିଆଯାଉ ।

୫ । ଆମେ ବାଟଘାଟରେ ଯାଉଥିଲାବେଳେ ଆମକୁ ଜାଣିଶୁଣି ପୋଲିସ୍ ପକ୍ଷରୁ ଧରା ଯାଉଛି । ବେଆଇନ ଜୋରିମାନା ଅସୁଲ କରାଯାଉଛି । ସରକାର ଏହାକୁ ରାଜକୋଷର ଆୟ ବୃଦ୍ଧିର ସାଧନ ଭାବରେ ଗ୍ରହଣ କରିଛି । ଏ ଅମାନୁଷିକ କାର୍ଯ୍ୟ ବନ୍ଦ କରାଯାଉ ।

ପେରିସ୍‌ର ବେଶ୍ୟାମାନେ ନିଜ ସଂଘର୍ଷ ଜାରି ରଖିବା ନିମନ୍ତେ ''ମକେଡମ୍'' ନାମକ ଏକ ସମ୍ବାଦପତ୍ର ମଧ୍ୟ ନିୟମିତ ପ୍ରକାଶ କରୁଛନ୍ତି । ରାଜନୈତିକ ଭାବରେ ସଚେତନ ହୋଇ ସେମାନେ ଟ୍ରେଡ୍ ଇଉନିୟନ ଢାଞ୍ଚାରେ ସଙ୍ଗଠିତ ସଂଗ୍ରାମ ଚଳାଇଛନ୍ତି । ୧୯୭୯ରେ ଲଣ୍ଡନର ଜଣେ ବେଶ୍ୟା ହେଲେନ ବକିଂହମ୍ ବେଶ୍ୟାମାନଙ୍କୁ ଆଇନଗତ ସଂରକ୍ଷଣ ଦେବା ଲାଗି ଏକ ବିଲ୍ ପାସ୍ କରାଇବାକୁ ଦାବି କରିଥିଲେ । ହେଲେ ସେଇଟାକୁ ହାଉସ ଅଫ୍ କମନ୍ସରେ ଉପସ୍ଥାପିତ କରାଯାଉ ନ ଥିଲା । ସମାଜର ମହାପୁରୁଷମାନେ ଆଶଙ୍କା କରୁଥିଲେ ଯେ ବେଶ୍ୟାବୃତ୍ତିକୁ ଅପରାଧମୁକ୍ତ କରିଦେଲେ ନାଗରିକ ଜୀବନରେ ଅରାଜକତା ବ୍ୟାପିଯିବ । ତେଣୁ ସେମାନେ ମତ ଦେଲେ ଯେ ବେଶ୍ୟାବୃତ୍ତି ଏକ ବ୍ୟକ୍ତିଗତ ସମସ୍ୟା ହୋଇଥିବାରୁ ବେଶ୍ୟାମାନେ ନିଜେ ଏହାର ସମାଧାନ ସୂତ୍ର ଖୋଜି ବାହାର କରିବା ଉଚିତ । ଏଥିରେ ଉତ୍‌କ୍ଷିପ୍ତ ହୋଇ ହେଲେନ୍ କହିଥିଲେ ଯେ–

''କୌଣସି ଉନ୍ନତ ରାଷ୍ଟ୍ରରେ ଯେତେବେଳେ କୌଣସି ସ୍ତ୍ରୀ ବେଶ୍ୟାବୃତ୍ତି କରିବାକୁ ବାଧ୍ୟ ହୁଏ ତେବେ ସେଇଟା ସେ ରାଷ୍ଟ୍ରର ମୁହଁରେ ଏକ ଶକ୍ତ ଚପେଟାଘାତ । ତଥାପି ଆମେ ବେଶ୍ୟାମାନେ ଅନ୍ତତଃ ପକ୍ଷେ ଏକ ସାମାଜିକ ଆବଶ୍ୟକତା ପୂରଣ କରିବାରେ ଆପ୍ରାଣ ସହଯୋଗ କରୁଛୁ । ତେଣୁ ଆମକୁ ମଧ୍ୟ ସମ୍ମାନିତ ନାଗରିକର ସମସ୍ତ ଅଧିକାର ନିଶ୍ଚିତ ଭାବରେ ମିଳିବା ଉଚିତ । ଆମର ବଂଶ ଏକ, ଜାତି ଏକ, ଦେଶ ଏକ.... ତା'ହେଲେ ଆମ ପ୍ରତି ଏ ଲଜ୍ଜାକର ଭେଦଭାବ ନୀତି କାହିଁକି ?'



Digitized by srujanika@gmail.com

ତଥାପି ବିଲ୍‌ଟି ଆଗତ ନ ହେବା ଫଳରେ ହେଲେନ୍ ପ୍ରକାଶ୍ୟରେ ଘୋଷଣା କରି ଦେଲେ ଯେ, "ଯଦି ଆଇନଟା ପାସ୍ କରା ନ ଯାଏ, ତା'ହେଲେ ଆମେ ପାର୍ଲିଆମେଣ୍ଟ ସଦସ୍ୟମାନଙ୍କ ସମେତ ଆମର ନାମକରା ଗ୍ରାହକମାନଙ୍କ ରହସ୍ୟ ପଦାରେ ପକାଇଦେବୁ ।" ଧମକ କାମ କଲା ଓ ପରିଶେଷରେ ଆଇନଟା ପାସ୍ ହୋଇ ଯାଇଥିଲା ।

**ବିଚିତ୍ର ଓ ଜଟିଳ ଶୋଷଣର ପନ୍ଥା :**

ବେଶ୍ୟାବୃତ୍ତି ଆମ ଆଗରେ ଏକ ବିଚିତ୍ର ଓ ଜଟିଳ ଧରଣର ଶୋଷଣ ପ୍ରବୃତ୍ତିକୁ ଉଦ୍‌ଘାଟିତ କରେ । ପୁରୁଷ ଓ ସ୍ତ୍ରୀ ମଧ୍ୟରେ ରହିଥିବା ଏ ସମ୍ପର୍କରେ ଉଭୟ ଶ୍ରେଣୀ କେବଳ ଶୋଷଣରେ ହିଁ ଆଗ୍ରହୀ ହୋଇଥାନ୍ତି – ପୁରୁଷ ନିଜର ଯୌନ ମୁକ୍ତି ଲାଗି ସ୍ତ୍ରୀକୁ ଶୋଷଣ କରେ ଓ ସ୍ତ୍ରୀ ତା' ଦେହ ବିନିମୟର ପୂରାପୂରା ମୂଲ୍ୟ ପାଇବା ଲାଗି ପୁରୁଷକୁ ଶୋଷଣ କରେ । ଏହି ଶୋଷଣ ପ୍ରବୃତ୍ତି ଆମ ଶ୍ରେଣୀ ବିଭକ୍ତ ବିଷମ ସମାଜର ଏକ ଅବିଭାଜ୍ୟ ଅଙ୍ଗ ।

ସବୁଠୁ ବିଚିତ୍ର କଥା ଯେ ଏହି ଦେହ-ବେପାରରେ ନାରୀ ହିଁ ନାରୀର ପ୍ରଧାନ ଶତ୍ରୁ । ଭାରତରେ କେତେକ ଦେହ ବେପାରୀ ଜାତିଙ୍କ ମଧ୍ୟରେ ମା'ମାନେ ହିଁ ନିଜ ଝିଅକୁ ଏଥିରେ ଠେଲିଥାନ୍ତି ।

ବେଶ୍ୟାମାନେ ଆମର ଯୌନ ବିଷୟକ ଦୂଷିତ ପ୍ରବୃତ୍ତିକୁ ନିଜ ଭିତରେ ସମାହିତ କରି ଦେହ-ବେପାର ମାଧ୍ୟମରେ ଆମର ସେବା କରନ୍ତି କି ଆମକୁ ବ୍ୟଭିଚାରୀ କରିଥାନ୍ତି, ତାହା ଗଭୀର ଚିନ୍ତାର ବିଷୟ । ରୋଜାଲିଂଡ ଉଇଲକିନସନ୍ ତାଙ୍କ ବହୁ ଚର୍ଚ୍ଚିତ "women of the street" ରେ ଏ ପ୍ରଶ୍ନର ଉତ୍ତର ଦେବାକୁ ଯାଇ ଲେଖିଛନ୍ତି ଯେ :

"ଅସଂଯମ, ସ୍ୱଚ୍ଛନ୍ଦ ସମ୍ଭୋଗ ଲିପ୍‌ସା ଓ ସମାଜରୁ ଅଲଗା ରହିବାର ଚିତ୍ତବୃତ୍ତି ଥିବା ଝିଅମାନେ ଅନୁକୂଳ ସୁଯୋଗ ପାଇଲା ମାତ୍ରକେ ବେଶ୍ୟାବୃତ୍ତିର ଗଭୀର ଗର୍ତ୍ତରେ ନିପତିତ ହୁଅନ୍ତି । ନିଜର ବିକୃତ, ବିରୂପ ଓ ଅବ୍ୟବହାରିକ ସମ୍ପର୍କ ତ୍ରସ୍ତ ଝିଅମାନେ ଭାବନ୍ତି ଯେ ବେଶ୍ୟା ହେଲାପରେ ତାକୁ ଏ ସମ୍ପର୍କ ଓ ବନ୍ଧନରୁ ମୁକ୍ତି ମିଳିଯିବ ।"

ଜଣେ ପାଶ୍ଚାତ୍ୟ ବେଶ୍ୟା କହନ୍ତି : "ମୁଁ ଲୋକଙ୍କ ମନୋରଞ୍ଜନ କରୁଛି । ଜର୍ଜ ବର୍ଣ୍ଣାଡଶ' ବି ତ ନିଜକୁ 'ଦ ଓଲ୍‌ଡ ଏଣ୍ଟରଟେନର୍' କହି ଏଇୟା କରୁଥିଲେ । ଆମେ ବି କରୁଛୁ । ବେଶ୍ୟାମାନେ ହେଉଛନ୍ତି ସମାଜରେ ସେଫ୍‌ଟି ଭଲ୍‌ଭ ।"

ଲେକ୍ ନ୍ୟୁକର୍ନୀ, ସୁଇଜରଲେଣ୍ଡରୁ ସ୍ୱାମୀ ବିବେକାନନ୍ଦ, ସ୍ୱାମୀ ରାମକୃଷ୍ଣାନନ୍ଦଙ୍କୁ ଲିଖିତ ଏକ ଚିଠିରେ କହିଛନ୍ତି ଯେ :



Digitized by srujanika@gmail.com

''ମୁଁ ପ୍ରଭୁଙ୍କଠାରେ ପ୍ରାର୍ଥନା କରୁଛି । ଶହ ଶହ ବେଶ୍ୟା ଆସନ୍ତୁ ଓ ତାଙ୍କ ଚରଣରେ ନିଜକୁ ସମର୍ପଣ କରନ୍ତୁ । ଯଦି ଜଣେ ବି ସାଧୁ ଲୋକ ମନ୍ଦିରକୁ ନ ଆସନ୍ତି, ତେବେ କିଛି କ୍ଷତି ନାହିଁ । ଆସ ! ବେଶ୍ୟାମାନେ ଆସ । ମଦ୍ୟପମାନେ ଆସ । ଚୋରମାନେ ଆସ । ସମସ୍ତେ ଆସ । ଶ୍ରୀ ପ୍ରଭୁଙ୍କ ଦ୍ୱାର ସମସ୍ତଙ୍କ ଲାଗି ସବୁବେଳେ ଖୋଲା ।''

ଯେତେଦିନ ଯାଏଁ ବେଶ୍ୟାବୃତ୍ତି ନିମନ୍ତେ ପୁରୁଷକୁ ଦଣ୍ଡିତ କରା ନ ଯାଇଛି, ସେତେଦିନ ଯାଏଁ ''ସପ୍ରେସନ୍ ଅଫ୍ ଇମ୍ମୋରେଲ ଟ୍ରାଫିକ୍ ଏକ୍ଟ (୧୯୫୮), ୟୁ.ପି. ନାୟକ ଗାର୍ଲସ୍ ପ୍ରୋଟେକ୍ସନ ଏକ୍ଟ (୧୯୨୨), ଦ ମାଡ୍ରାସ ଏସ୍. ଆଇ. ଟି. ଏକ୍ଟ (୧୯୩୦), ଦ ବେଙ୍ଗଲ ଏସ୍.ଟି.ଏକ୍ଟ (୧୯୩୩), ଦ ବମ୍ବେ ଦେବଦାସୀ ଏକ୍ଟ (୧୯୩୪), ଦ ମହିଶୂର ଏସ୍. ଆଇ. ଟି. ଏକ୍ଟ (୧୯୫୨) ଆଦି ଯେତେ ଆଇନ ହେଲେ ମଧ୍ୟ ତାହା ଏ ଦେଶରେ ବନ୍ଦ କରାଯାଇପାରିବ ନାହିଁ ।

ଚଳିତ ଶତାବ୍ଦୀରେ ବେଶ୍ୟାବୃତ୍ତି ଯେତେ ପରିମାଣରେ ବୃଦ୍ଧି ପାଇଛି, ତାହା ଅଭୂତପୂର୍ବ । ପଞ୍ଚମ ଦଶକ ଠାରୁ ଏହା ଏବେ ଶତକଡ଼ା ହଜାରେ ଗୁଣ ବୃଦ୍ଧି ପାଇଛି । ଏବେ ମଧ୍ୟ ତାହା ବଢ଼ି ଚାଲିଛି ।

ଏଭଳି ପରିସ୍ଥିତିରେ ଯଦି ବେଶ୍ୟାମାନେ ଏ ଦେହ-ବେପାରକୁ ଏକ ଶିଳ୍ପ ଭାବେ ଗ୍ରହଣ କରାଯିବା ଲାଗି ଦାବି କରନ୍ତି; ଶିଳ୍ପ, ଶିଳ୍ପପତି ଓ ଶ୍ରମିକକୁ ଦିଆ ଯାଉଥିବା ସୁବିଧା ସୁଯୋଗ, ଅଧିକାର ଓ ସମ୍ମାନ ଦାବି କରନ୍ତି, ଏଥିରେ ବିସ୍ମୟ ରହିଲା କେଉଁଠି ?

ବାଂଛଡ଼ା, କଂଜର, ବେଡ଼ିଆ, ରାଜପୂତନଟ ଆଦି ଜାତିରେ ବେଶ୍ୟାବୃତ୍ତି ଏକ ସମ୍ମାନନୀୟ ଧର୍ମର ସ୍ଥାନ ରଖେ ।

ଏହି ଗଣିକାବୃତ୍ତି ଫଳରେ ଆମ ସମାଜରେ, ମୁଖ୍ୟତଃ ଯୁବଗୋଷ୍ଠୀ, ଛାତ୍ରସମାଜ, ତଥା ନିମ୍ନ ମଧ୍ୟବିତ୍ତ ସମାଜରେ ମାନସିକ ଓ ଯୌନ ବିକୃତି ତଥା ଅପରାଧ ପ୍ରବଣତା କିଛି ପରିମାଣରେ ବୃଦ୍ଧି ପାଉଛି । ସେହିପରି ସିଫିଲିସ୍, ଗନେରିଆ ଆଦି ବିଭିନ୍ନ ଯୌନରୋଗର ବୃଦ୍ଧି ଘଟୁଛି । ଏଡ୍ସ ଭଳି ବ୍ୟାଧିର ଆବିର୍ଭାବ ହେଉଛି । ସାମାଜିକ ଯୌନ ବର୍ଜନା ଏ ପରିସ୍ଥିତିକୁ କରି ତୋଳିଛି ଆହୁରି ଜଟିଳ ।

ଡିସେମ୍ବର ୩, ୧୯୯୨ରେ ପ୍ରକାଶିତ ସ୍ୱରାଷ୍ଟ୍ର ମନ୍ତ୍ରଣାଳୟର ଜାତୀୟ ବ୍ୟୁରୋ ରିପୋର୍ଟ ଅନୁସାରେ ଭାରତରେ ପ୍ରତି ୬ ମିନିଟ୍‌ରେ ଜଣେ ନାରୀ ପ୍ରତି ଅସଦାଚରଣ, ପ୍ରତି ୨୬ ମିନିଟ୍‌ରେ ଏକ ଧର୍ଷଣ, ପ୍ରତି ୪୩ ମିନିଟ୍‌ରେ ଏକ ଅପହରଣ, ପ୍ରତି ୫୪ ମିନିଟରେ ଏକ ବଳାତ୍କାର, ଧର୍ଷଣ, ପ୍ରତି ୧ ଘଣ୍ଟା ୪୨ ମିନିଟ୍‌ରେ ଏକ ଯୌତୁକଜନିତ ମୃତ୍ୟୁ ଘଟିଥାଏ । ପୁଣି ଏ ହାର କ୍ରମଶଃ ବଢ଼ି ବଢ଼ି ଚାଲିଛି ।



Digitized by srujanika@gmail.com

**ଜନବାଦ, ସେକ୍ସ, ନାରୀ ଓ ବେଶ୍ୟା :**

ସ୍ତ୍ରୀ ଓ ପୁରୁଷ ମଧ୍ୟରେ ଅସ୍ତିତ୍ୱ ଓ ଅସ୍ମିତାର ଯେଉଁ ଅନନ୍ତ ଅନ୍ତଃ ସମ୍ପର୍କ ଓ ଅନ୍ତର୍ବିରୋଧର ଦୁନିଆଁ ରହିଛି, ନିଃସନ୍ଦେହ ଭାବରେ ତା'ର ସର୍ବୋପରି ରାଗାତ୍ମକ ଧୂରୀ ହେଉଛି ସେକ୍ସ । ସଭ୍ୟତା ଆଦିକାଳରେ ଯେତେବେଳେ ଜୀବନ ନିର୍ବାହର ଆଧାର ମୁଖ୍ୟତଃ ଶିକାର ଥିଲା, ସେତେବେଳେ ସେମାନେ ପରସ୍ପର ସହଚର ଥିଲେ । ମାତୃ ପ୍ରଧାନ ସମାଜ-ବ୍ୟବସ୍ଥାରେ ନାରୀ ହିଁ ମୁଖ୍ୟ ସ୍ଥାନର ଅଧିକାରିଣୀ ଥିଲା । ହେଲେ ତା'ର ପରବର୍ତ୍ତୀ ଇତିହାସ ହେଉଛି କ୍ରମଶଃ ସ୍ତ୍ରୀର ଗୋଲାମୀ ଓ ପୁରୁଷର କ୍ରମବର୍ଦ୍ଧମାନ ବର୍ଚ୍ଚସ୍ୱର ଇତିହାସ । ସ୍ତ୍ରୀର ସ୍ୱତନ୍ତ୍ର ଇୟତ୍ତା ଓ ସତ୍ତାକୁ ନଷ୍ଟ କରିବା ଲାଗି ସେତେବେଳେ ଦୁଇଟା ତତ୍ତ୍ୱ ମୁଖ୍ୟ ଭୂମିକା ଗ୍ରହଣ କରିଥିଲା । ପ୍ରଥମତଃ ପ୍ରସବ, ଗର୍ଭାଧାନ ପ୍ରକ୍ରିୟା ଓ ପ୍ରସୂତୀ ସମୟରେ ସ୍ତ୍ରୀ କିଛି ସମୟ ଲାଗି ବିଭିନ୍ନ କାର୍ଯ୍ୟ ବ୍ୟାପାରରୁ କଟି ଯାଉଥିଲା । ଦ୍ୱିତୀୟତଃ କ୍ରମାଗତ ଜୀବନ ପଦ୍ଧତିରେ ଶିକାର ସମେତ ପଶୁପାଳନ, ଚାଷବାସ, ବ୍ୟବସାୟ ବାଣିଜ୍ୟ, ଯୁଦ୍ଧ ଆଦି ସହ ଜଡ଼ିତ ସଂଚୟବାଦୀ ପ୍ରବୃତ୍ତି ମଧ୍ୟ ତାକୁ ଘରେ ସଂରକ୍ଷିକା ହୋଇ ସଙ୍କୁଚିତ ହେବାଲାଗି ଧୀରେ ଧୀରେ ବାଧ୍ୟ କରି ଦେଇଥିଲା ।

ଏଥି ମଧ୍ୟରୁ ପ୍ରଥମଟି ପ୍ରାକୃତିକ ଅନିବାର୍ଯ୍ୟତା ହୋଇଥିଲେ ହେଁ ଥିଲା ସ୍ୱଳ୍ପକାଳ ସ୍ଥାୟୀ, ଯେତେବେଳେ କି ଦ୍ୱିତୀୟଟି ଥିଲା ଆରୋପିତ ଓ ଦୀର୍ଘ ସମୟ ସାପେକ୍ଷ । ଏହିପରି ଭାବରେ ପୁରୁଷର ସଂସାର ଧୀରେ ଧୀରେ ବିସ୍ତୃତ ଓ ସ୍ତ୍ରୀର ଦୁନିଆଁ ସଙ୍କୁଚିତ ହୋଇ ଚାଲିଲା ।

ସ୍ତ୍ରୀ ଲାଗି ଯେଉଁ ଉଦାର ସର୍ତ୍ତାବଳୀର ଆବଶ୍ୟକତା ଥିଲା, ପୁରୁଷ ପ୍ରଧାନ ସମାଜ ନିଜ ସ୍ୱାର୍ଥ ଲାଗି ସ୍ତ୍ରୀକୁ ସେଥିରୁ ବଞ୍ଚିତ ରଖିଲା । ଧୀରେ ଧୀରେ ନାରୀର ପକ୍ଷ କାଟି ଦିଆଗଲା ଏବଂ ତା' ମସ୍ତିଷ୍କ ଓ ଜନନାଙ୍ଗ ଉପରେ ପୁରୁଷ-ଦର୍ପ କୁଣ୍ଡଳୀ ମାରି ବସିଗଲା । ସ୍ତ୍ରୀକୁ ଅନୁତ୍ପାଦକ ବୋଲି ଥରେ ଗ୍ରହଣ କରିନେଲା ପରେ ମଧ୍ୟ ପୁରୁଷ ଉତ୍ପାଦନତନ୍ତ୍ରରେ ତା'ଠାରୁ ସହଯୋଗ ନେଇ ଚାଲିଲା ଏବଂ ତା'କୁ ଶିକ୍ଷା, ସମ୍ପତ୍ତି ଓ ଅନ୍ୟାନ୍ୟ ଅଧିକାରରୁ ମଧ୍ୟ ବଞ୍ଚିତ କରିଦେଲା । ନିଜ ଲିପ୍ସା ଚରିତାର୍ଥ କରିବା ନିମନ୍ତେ ସେ ଅଧିକାଂଶତଃ ଯୁଦ୍ଧରେ ବ୍ୟାପୃତ ହେଲା ଏବଂ ସ୍ତ୍ରୀ ଉପରେ ଦୋଷାରୋପଣ କରି କହିଲା ଯେ, ପୃଥିବୀର ଅଧିକାଂଶ ଯୁଦ୍ଧ ବିଗ୍ରହ ଲାଗି କେବଳ ସ୍ତ୍ରୀ ହିଁ ଉତ୍ତରଦାୟୀ ।

ସାମନ୍ତବାଦ ସ୍ତ୍ରୀକୁ କେବଳ ''ଭୋଗ ସାମଗ୍ରୀ'' ଭିତରେ ସୀମିତ କରିଦେଲାବେଳେ ''ପୁଞ୍ଜିବାଦ'' ତାକୁ ''ଉପଭୋଗ୍ୟ ବସ୍ତୁ'' ବା ''ମାଲ''ରେ ପରିସୀମିତ କଲା । ଯୌନ ଅନ୍ତର୍ବିରୋଧର କୁଣ୍ଠାର ପ୍ରାରମ୍ଭ ସେତେବେଳଠୁ ହେଲା, ଯେତେବେଳେ ସ୍ତ୍ରୀ ସଙ୍ଗେ ଅନ୍ୟ କୌଣସି ଲୋକର ସମ୍ଭୋଗକୁ ପୁରୁଷ ସ୍ୱୀକାର କରିପାରିଲା ନାହିଁ । ଅନ୍ୟର ସ୍ତ୍ରୀ, ଝିଅ, ଭଉଣୀକୁ ଉପଭୋଗ କରିବା ଆଭିଜାତ୍ୟ, ପ୍ରତିଷ୍ଠା, ସମ୍ମାନର ପ୍ରଶ୍ନରେ ପରିଣତ ହେଲା, ହେଲେ ନିଜର ଝିଅ, ଭଉଣୀ ତା'ଲାଗି କୁଇନାଇନ୍ ବଟିକା ପରି ହେଲେ । ଜନ୍ମ ହେଲା



Digitized by srujanika@gmail.com

ମାତ୍ରକେ ଝିଅମାନଙ୍କୁ ହତ୍ୟା କରାଯିବାକୁ ଲାଗିଲା । ସେମାନଙ୍କ ଦ୍ୱାରା କୂଳରେ କଳଙ୍କ କାଳିମାର ଭୟ ହେଲା । ଯେଉଁ ଜାତି ଗୌରବୋଚିତ ବର୍ବରଣରେ ଯେତେ ଅଗ୍ରଣୀ ରହିଥିଲା, ସେଠାରେ ଏହି ପ୍ରବୃତ୍ତି ସେତେ ସ୍ପଷ୍ଟ ଭାବରେ ପରିଲକ୍ଷିତ ହେଲା । ରାଜସ୍ଥାନକୁ ଏହାର ଏକ ନମୁନା ବୋଲି କୁହାଯାଇପାରେ । ପୁରୁଷ ଏଥିଲାଗି ମଧ୍ୟ କ୍ଷୋଭ ଜର୍ଜରିତ ହେଉଥିଲା ତା'ର ଜନ୍ମ ମଧ୍ୟ ସ୍ତ୍ରୀ ଯୋନି ଭିତରୁ ।

କେବଳ ଭାରତ ନୁହେଁ ଅନ୍ୟାନ୍ୟ ଦେଶରେ ମଧ୍ୟ ଏ ରୋଗ ବୃଦ୍ଧି ପାଇ ଚାଲିଥିଲା । ପ୍ରଫେଟ୍ ମହମ୍ମଦଙ୍କ ପ୍ରାରମ୍ଭିକ କାଳରେ ଆରବରେ ଝିଅମାନଙ୍କୁ ଜୀବନ୍ତ କବର ଦେବାର ପ୍ରଥା ପ୍ରଚଳିତ ଥିଲା । ଏ ପ୍ରସଙ୍ଗରେ ଏକ ଉପାଖ୍ୟାନ ମଧ୍ୟ ରହିଛି: ଥରେ ମହମ୍ମଦ ବସିଥିଲେ । ତାଙ୍କର ଜଣେ ଶିଷ୍ୟ ତାଙ୍କ ପାଖକୁ ଆସିଲା । ମୁଖମଣ୍ଡଳରେ ଗଭୀର ବିଷର୍ଣ୍ଣତା । କାରଣ ଜିଜ୍ଞାସା କରିବାରୁ ସେ ଉତ୍ତର ଦେଇ କହିଲା ଯେ, ସେ ସେଦିନ ତା' ଝିଅକୁ ଜୀବନ୍ତ କବର ଦେବାକୁ ଯାଇଥିଲା । ଯାଉଁ ଯାଉଁ ସେ ହଠାତ୍ ଝୁଣ୍ଟି ପଡ଼ିଲା ଏବଂ ତା' ଆଖି ତା' ଝିଅର ଆଖି ସହିତ ମିଶିଗଲା । ଶିଷ୍ୟଟି କାନ୍ଦ କାନ୍ଦି କହିଲା- ''ସେ ମୋତେ ଦେଖୁଥିଲା ।'' ଶିଷ୍ୟର କଥା ଏତେ କରୁଣ ଥିଲା ଯେ ପ୍ରଫେଟଙ୍କ ମନ କରୁଣାରେ ବିଗଳିତ ହୋଇ ଉଠିଲା । ପରବର୍ତ୍ତୀ ସମୟରେ ଏହି ଘାତକ ପ୍ରବୃତ୍ତିକୁ ବନ୍ଦ କରିବା ନିମନ୍ତେ ସେ ଯଥାସମ୍ଭବ ନିଦାନ ପ୍ରସ୍ତୁତ କରିଥିଲେ ।

ସାମନ୍ତବାଦ ଓ ପୁଞ୍ଜିବାଦୀ ଯୁଗର ଲମ୍ବା ଓ ଅନ୍ଧାରୀ ସୁଡଙ୍ଗରେ ସ୍ତ୍ରୀର କେବଳ ଜନ୍ମ ନୁହେଁ ତା'ର ମୃତ୍ୟୁ ମଧ୍ୟ ପୁରୁଷର ସ୍ୱାର୍ଥଲିପ୍ସା ଓ ଅହଂର ବଳିବେଦିରେ ଚଢ଼ିବାକୁ ଲାଗିଲେ । ମିଶରର ମମି ପ୍ରଥାରୁ ଆରମ୍ଭ କରି ଭାରତର ସତୀ ପ୍ରଥା ଯାଏଁ ପୁରୁଷର ବର୍ବରତମ ଅଧିକାର ଓ ଭୋଗଲିପ୍ସାର ଲମ୍ବା କାହାଣୀ ।

ସାମନ୍ତବାଦ, ପୁଞ୍ଜିବାଦ ଓ ସାମ୍ରାଜ୍ୟବାଦ ଦ୍ୱିତୀୟ ଓ ତୃତୀୟ ଶ୍ରେଣୀ ନାରୀମାନଙ୍କ ଅଭିବୃଦ୍ଧି ଘଟାଇଛି । ଦ୍ୱିତୀୟ ଶ୍ରେଣୀର ସ୍ତ୍ରୀ ହେଲେ ପୁରୁଷ ପ୍ରଧାନ ସମାଜ ମାନସିକତା ଦ୍ୱାରା ନିର୍ଦ୍ଧାରିତ ନିୟତି ସହ ସନ୍ଧି କରିଥିବା ବା ସମ୍ମୋହିତ ସ୍ତ୍ରୀ । ତୃତୀୟ ଶ୍ରେଣୀର ସ୍ତ୍ରୀ ସେମାନେ, ଯେଉଁମାନେ ନିଜର ସ୍ୱତନ୍ତ୍ର ସତ୍ତା ନିମନ୍ତେ ବ୍ୟାକୁଳ; ଅଥଚ ପଥ ଖୋଜି ପାଆନ୍ତି ନାହିଁ । ଏହାର ବିପରୀତ କ୍ରମରେ ଜନବାଦ ଏମିତି ସ୍ତ୍ରୀମାନଙ୍କୁ ଜନ୍ମ ଦେଇଛି, ଯେଉଁମାନେ ପତନଶୀଳ ପରିସ୍ଥିତି ବିରୋଧରେ ସଂଗ୍ରାମ କରି ଶୌର୍ଯ୍ୟ, ସଂଘର୍ଷ, ମୁକ୍ତି ଓ ଆସ୍ଥାର ନୂତନ ଦିଗନ୍ତ ଉନ୍ମୋଚିତ କରୁଛନ୍ତି । ଏହି ପ୍ରଥମ ଶ୍ରେଣୀର ସ୍ତ୍ରୀମାନଙ୍କ ମଧ୍ୟରେ ଅଛନ୍ତି ଗାର୍ଗୀ, ଧ୍ରୁବ ସ୍ୱାମିନୀ ହାଡ଼ାରାଣୀ, ରାଣୀ ସିନିଗୀ ଦେଇ, କୋଳି ଦେଈ, କେଥେରୀନ୍ (ରୁଷୀୟ ଅରାଜକତାବାଦୀଙ୍କ ନାୟିକା)ଙ୍କଠୁ ଆରମ୍ଭ କରି ବିଶ୍ୱର ମୁକ୍ତି ସଂଗ୍ରାମ ଓ ଦେଶର କୋଣେ କୋଣେ ନିଜ ଶୌର୍ଯ୍ୟ ସହିତ ସଂଗ୍ରାମ କରୁଥିବା ସ୍ତ୍ରୀ ।



Digitized by srujanika@gmail.com

ସାମନ୍ତବାଦୀ, ପୁଞ୍ଜିବାଦୀ ଓ ସାମ୍ରାଜ୍ୟବାଦୀ ଶକ୍ତି ଯେଉଁଠାରେ ବି ନିଜର ଅପବିତ୍ର ପଞ୍ଝା ଥାପିଲା, ସେଠି ବେଶ୍ୟା ଓ ବର୍ଣ୍ଣଶଙ୍କରଙ୍କ ପ୍ରାଦୁର୍ଭାବ ବୃଦ୍ଧି ପାଇ ଯାବତୀୟ ବିଶୃଙ୍ଖଳା ସୃଷ୍ଟି କଲା । କାଳାନ୍ତରରେ ଜନବାଦ ସେମାନଙ୍କୁ ଘଉଡ଼ି ଦେଲାପରେ ସେହି ବେଶ୍ୟା ଓ ବର୍ଣ୍ଣଶଙ୍କରମାନଙ୍କୁ ସମାଜରେ ପୁନଶ୍ଚ ସମ୍ମାନିତ ଆସନ ଦିଆଗଲା । ଚୀନ, ଭିଏତନାମ, କାମ୍ବୁଚିଆ ଆଦି ଉଦାହରଣ ଆମ ଆଗରେ ।

ସମାଜର ବିକାଶ ସହିତ ସେକ୍ସ ପ୍ରତି ଲୋକଙ୍କ ଦୃଷ୍ଟିକୋଣରେ ବି ପରିବର୍ତ୍ତନ ଘଟିଛି । ଆଦିମ ଅବସ୍ଥାରେ ସେକ୍ସ ପ୍ରତି ଲୋକଙ୍କ ଯେଉଁ ଦୃଷ୍ଟିକୋଣ ଥିଲା, ତାହା ସାମନ୍ତବାଦୀ ବ୍ୟବସ୍ଥାର ବିକାଶ ଫଳରେ ବଦଳି ଗଲା । ଏବଂ ତା'ର ପତନ କାଳରେ ସେ ଦୃଷ୍ଟିକୋଣର ବି ପତନ ଘଟିଲା । ଫ୍ରାନ୍ସର ପୁଞ୍ଜିବାଦୀ-ଜନବାଦୀ ବିପ୍ଳବବେଳେ ଯେଉଁ ଚେତନାର ଅଭ୍ୟୁଦୟ ଘଟିଥିଲା, ସେଇଟା ସେକ୍ସ ପ୍ରତି ଲୋକଙ୍କ ପୁରୁଣା ଦୃଷ୍ଟିକୋଣ ବଦଳାଇ ଦେଇଥିଲା । ସମାନତା, ସୌଭ୍ରାତୃତ୍ୱ ଓ ସ୍ୱାଧୀନତା ଫରାସୀ ବିପ୍ଳବର ମୂଳାଧାର ଥିଲା । ସେହିପରି ସେକ୍ସର ନିଜ ଦୁନିଆଁରେ ବି ସମାନତା ଓ ସ୍ୱାଧୀନତାର ଦାବି କରାଯାଇଥିଲା ।

ଅତୀତର ପ୍ରତ୍ୟେକ ଯୁଗରେ ନାରୀର ଅବସ୍ଥା ସେ ଯୁଗର ଶୋଷିତ ମଣିଷର ଅବସ୍ଥାର ଅନୁରୂପ ହୋଇ ଆସିଛି । ଦାସ ଯୁଗରେ ନାରୀ ଦାସୀଭଳି କିଣାବିକାର ସାମଗ୍ରୀ ବା ଯୌତୁକରେ ଦିଆ ଯାଉଥିବା ବସ୍ତୁପରି ଥିଲା । ସାମନ୍ତୀଯୁଗରେ ତା' ଅବସ୍ଥା ଭୂମି ଦାସଙ୍କ ଅବସ୍ଥାରୁ ଭିନ୍ନ ନ ଥିଲା । ପୁଞ୍ଜିବାଦୀ ଯୁଗରେ ସେମାନଙ୍କ ଅବସ୍ଥା ଶ୍ରମିକପରି ଓ ସାମ୍ରାଜ୍ୟବାଦୀ ଶୋଷଣ କାଳରେ ପରାଧୀନ ଦେଶର ଜନତା ପରି ଥିଲା । ଆମେରିକା, ଫ୍ରାନ୍ସ, ବ୍ରିଟେନ୍ ଆଦି ପୁଞ୍ଜିବାଦୀ ଦେଶ ଆଜି ସାମ୍ରାଜ୍ୟବାଦୀ ବ୍ୟବସ୍ଥାର ପତନ କାଳ ମଧ୍ୟ ଦେଇ ଗତି କରୁଛନ୍ତି; ତେଣୁ ମାନବ ଇତିହାସର ସେ ସମସ୍ତ ଦୁର୍ଗୁଣାବଳୀକୁ ପ୍ରକାଶ କରୁଛି, ଯାହାକୁ ସଭ୍ୟତା ଲାଗି କଳଙ୍କ ବୋଲି ମନେ କରାଯାଉଛି ।

**ଏକ ଅର୍ଥହୀନ ଶବ୍ଦ ଘେରର ଦୁନିଆଁ :**

ବିଂଶ ଶତାବ୍ଦୀର ପ୍ରାରମ୍ଭିକ କାଳରୁ ହିଁ ବେଶ୍ୟାବୃତ୍ତିର ବିଭୀଷିକାକୁ ଗଭୀର ଭାବରେ ଉପଲବ୍ଧି କରାଗଲା । ସମାଜ, ଶିକ୍ଷାୟତନ ଓ ସହରୀକରଣର ଏ ଦୁର୍ନିବାର ଅଭିଶାପରୁ ମୁକ୍ତି ପାଇବା ଲାଗି ଉହଳ ବିକଳ ହେଲା । ଆନ୍ତର୍ଜାତିକ ସ୍ତରରେ ଅନେକ ଆଇନ ପ୍ରଣୟନ ହେଲା ।

ରୁଷିଆର ଜାରଶାହୀ ବେଶ୍ୟାବୃତ୍ତିକୁ ସରକାରୀ ସଂରକ୍ଷଣ ଦେଇଥିବାରୁ ତାହା ଅଧିକ ସମୃଦ୍ଧ ହୋଇଥିଲା । ମହାନ୍ ରୁଷ ବିପ୍ଳବର ପ୍ରାୟ ବାରବର୍ଷ ପରେ ସୋଭିଏତ୍ ସରକାର ଏକ ପଞ୍ଚବାର୍ଷିକ ଯୋଜନା ପ୍ରଣୟନ କରି ''ସାମାଜିକ ସୁରକ୍ଷା ସମିତି'' ଗଠନ କରି ମଧ୍ୟ ତାହା ସମ୍ପୂର୍ଣ୍ଣ ଭାବରେ ଉନ୍ମୂଳନ କରିପାରି ନ ଥିଲେ ।



Digitized by srujanika@gmail.com

ଭାରତରେ ବେଶ୍ୟାବୃତ୍ତି ଆଇନତଃ ନିଷିଦ୍ଧ ହୋଇଥିଲେ ହେଁ ଧର୍ମନିରପେକ୍ଷ ଦେଶରେ ଧର୍ମ ନାମରେ ଆଇନ ପ୍ରାୟତଃ ପଙ୍ଗୁ ହୋଇ ଯାଇଥାଏ । ଦେବଦାସୀ ପ୍ରଥା ଏକ ଧର୍ମସମ୍ମତ ଧାର୍ମିକ ପ୍ରଥା, ତେଣୁ ଆଇନ ଏଥିରେ କୌଣସି ପ୍ରକାର ହସ୍ତକ୍ଷେପ କରିପାରେ ନାହିଁ । ଏହାର ବିଷମୟ ଫଳର ଅନୁମାନ କେବଳ ଏଇଥିରୁ ଅନୁମାନ କରାଯାଇପାରିବ ଯେ, ଏବେ କେବଳ ପୁନା ସହରରେ ଦେବଦାସୀମାନଙ୍କ ସଂଖ୍ୟା ପାଞ୍ଚ ହଜାରରୁ ବେଶୀ ।

କର୍ଣ୍ଣାଟକର ଯେଲମ୍ମା ମନ୍ଦିରରେ ଅପ୍ରାପ୍ତ ବୟସ୍କା ଝିଅମାନଙ୍କୁ ଜୀବନବ୍ୟାପୀ ବେଶ୍ୟାବୃତ୍ତି କରିବା ଲାଗି ଦେବୀଙ୍କ ଚରଣରେ ଅର୍ପଣ କରାଯାଏ । ଏମାନେ 'ଯୋଗତିନୀ' ନାମରେ ପରିଚିତ । ଏ ଦେବଦାସୀ ପ୍ରଥା ଉଚ୍ଛେଦ କରିବା ଲାଗି ୧୯୩୪ରେ ବ୍ରିଟିଶ ସରକାର ଏକ ଆଇନ୍ ପାସ୍ କରିଥିଲେ ମଧ୍ୟ ଏ ପ୍ରଥା ବିରୋଧରେ ଅଦାଲତରେ ଗୋଟାଏ ହେଲେ ଅଭିଯୋଗ ଅଣାଯାଇ ନ ଥିଲା । ଏଭଳି ଅବସ୍ଥାରେ ଅଇନ ମଧ୍ୟ ଅସହାୟ ।

ଏକ ସର୍ଭେରୁ ଜଣାଯାଇଛି ଯେ ଶତକଡ଼ା କୋଡ଼ିଏ ଭାଗ ବେଶ୍ୟା କୌଣସି ନା କୌଣସି ପ୍ରକାରେ ଉଧାରୀର ଶିକାର ହୋଇଥାନ୍ତି । ୧୫% ଭାଗ ବେଶ୍ୟା ଯୌନ ପ୍ରତି ଆସକ୍ତା । ୬୫% ଭାଗ ବେଶ୍ୟା ଏହି ଧନ୍ଦା ଛାଡ଼ି ସମ୍ମାନଜନକ ଜୀବନଯାପନ କରିବା ଲାଗି ଲାଳାୟିତ । ଜଣେ ବେଶ୍ୟାର ସାମଗ୍ରିକ ଆୟର ଶତକଡ଼ା ଅଶୀ ଭାଗ ମାଲିକ, ଦଲାଲ୍‌ର କମିଶନ୍ ଓ ଅନ୍ୟ ରକ୍ଷଣାବେକ୍ଷଣରେ ବ୍ୟୟିତ ହୋଇଥାଏ । ଅଧିକାଂଶ ବେଶ୍ୟା କୋଡ଼ିଏ ବର୍ଷରୁ ଅଧିକ କାଳ ଏ ଧନ୍ଦା କରିପାରନ୍ତି ନାହିଁ । ଶତକଡ଼ା ତିନିଭାଗ ବେଶ୍ୟା କେବଳ ନିଜ ଧର୍ମର ଗ୍ରାହକମାନଙ୍କୁ ହିଁ ଚାହିଁଥାନ୍ତି ଏବଂ ୯୭% ଭାଗ ବେଶ୍ୟା ଗ୍ରାହକର ଧର୍ମ କଥା ନେଇ ମୁଣ୍ଡ ଖେଳାନ୍ତି ନାହିଁ । ୮୫% ଭାଗ ବେଶ୍ୟା ଗ୍ରାହକର ବୟସ କଥା ଚିନ୍ତା କରନ୍ତି ନାହିଁ । ଶତକଡ଼ା ଚାରିଭାଗ ବେଶ୍ୟା ୧୮ ରୁ ୩୦ ବର୍ଷ, ଶତକଡ଼ା ସାତ ଭାଗ ବେଶ୍ୟା ୩୧ରୁ ୪୫ ବର୍ଷ, ଶତକଡ଼ା ଆଠଭାଗ ବେଶ୍ୟା ୪୬ ରୁ ଊର୍ଦ୍ଧ୍ୱ ବୟସର ପୁରୁଷମାନଙ୍କୁ ପସନ୍ଦ କରିଥାନ୍ତି । ଶତକଡ଼ା ଅଣସ୍ତରି ଭାଗ ବେଶ୍ୟା ଧନ୍ଦାରେ ଦିନରାତି ବାଛବିଚାର କରନ୍ତି ନାହିଁ । ଶତକଡ଼ା ଏକତିରିଶ ଭାଗ ବେଶ୍ୟା ରାତିରେ ଧନ୍ଦା କରିବାକୁ ପସନ୍ଦ କରନ୍ତି । ଶତକଡ଼ା ଚଉଦ ଭାଗ ବେଶ୍ୟା ରକ୍ଷିତା ହେବା ଲାଗି ଆଗ୍ରହୀ ।

ବେଶ୍ୟାମାନେ ନିଜର ସୁରକ୍ଷା ଲାଗି ପୋଲିସକୁ ଉତ୍କୋଚ ଦେବା ସାଙ୍ଗକୁ ମାଗଣାରେ ଦେହଦାନ ମଧ୍ୟ କରିଥାନ୍ତି ।

ବଳ ପ୍ରୟୋଗ, ବାଧ ବାଧକତା, ସାମାଜିକ ବହିଷ୍କାର, ନୈତିକ ବର୍ଜନା, ବୈଧାନିକ ନିଷେଧ, ଆଇନ, ପୋଲିସ, ନାରୀ ନିକେତନ, ରିଫର୍ମମେଟରୀ ଆଦି ବେଶ୍ୟାବୃତ୍ତିର ଫଳପ୍ରଦ ସମାଧାନ ପନ୍ଥା ନୁହେଁ । ପରିବର୍ତ୍ତେ ଏସବୁ ବେଶ୍ୟାବୃତ୍ତିକୁ ଏକରକମ ଉତ୍ସାହିତ କରୁଛି କହିଲେ ଚଳେ ।



Digitized by srujanika@gmail.com

ସାଧାରଣ ଶିକ୍ଷା, ଯୌନ ଶିକ୍ଷା, ବେଶ୍ୟାମାନଙ୍କ ପ୍ରତି ସମ୍ବେଦନାପୂର୍ଣ୍ଣ ବ୍ୟବହାର, ସେମାନଙ୍କୁ ଓ ସେମାନଙ୍କ ସନ୍ତାନ, ପରିବାରବର୍ଗଙ୍କ ପ୍ରତି ସାର୍ବଜନୀନ ପ୍ରକାଶ୍ୟ ଓ ପ୍ରତ୍ୟକ୍ଷ ସାମାଜିକ ସ୍ୱୀକୃତି, ସମାଜରେ ସେମାନଙ୍କର ସମ୍ମାନନୀୟ ଅଧିଗ୍ରହଣ, ସେମାନଙ୍କ ପ୍ରତି ସକୃତକ ମାନବିକ ଦୃଷ୍ଟିକୋଣ, ସମ୍ମାନପୂର୍ଣ୍ଣ ଓ ସମାନ ନାଗରିକ ଅଧିକାର ପ୍ରଦାନ, ସଫଳ ପୁନର୍ଥଇଥାନ ବ୍ୟବସ୍ଥା, ସଂରକ୍ଷଣ, ସହଜ ରୋଜଗାର, ଋଣ ବ୍ୟବସ୍ଥା, ନ୍ୟାୟ, କଲ୍ୟାଣକର ଅର୍ଥନୀତି, ସର୍ବତୋମୁଖୀ ସମାଜିକ ଉନ୍ନୟନ, ସାମାଜିକ ଓ ମାନବିକ ଉଦାରତା, ଗଣଚେତନା ଆଦି ଏ ଦିଗରେ କିଛିଟା ସଫଳ ପଦକ୍ଷେପ ହୋଇପାରେ ।

ଆଜିର ସନ୍ଦର୍ଭରେ 'ବେଶ୍ୟାବୃତ୍ତି' ଶବ୍ଦଟା ହିଁ ସମ୍ପୂର୍ଣ୍ଣ ଅର୍ଥହୀନ ହୋଇଯାଇଛି । ଏହି ଶବ୍ଦ ସହିତ ନୈତିକତାର ପ୍ରଶ୍ନ ଓ ମାନ୍ୟତା ଜଡ଼ିତ । ନୈତିକତା ପ୍ରକୃତରେ ଅତୀତର ପରମ୍ପରା, ରଢ଼ିବାଦିତା, ସିଦ୍ଧାନ୍ତର, ନବୀକରଣର ନାମାନ୍ତର ମାତ୍ର । ଅତୀତ ପ୍ରତି ଏକରକମ ବାନ୍ଧି ହୋଇ ପଡ଼ିବାର ଅଯଥାର୍ଥ ମୋହ ଓ ପ୍ରଗତିର ବୈଜ୍ଞାନିକ ଧର୍ମର ବିରୁଦ୍ଧାଚରଣ । ତେଣୁ ଏ ଶବ୍ଦଟି ସମ୍ପୂର୍ଣ୍ଣ ପୂର୍ବାଗ୍ରହଯୁକ୍ତ ଓ ସାପେକ୍ଷ, ନିରପେକ୍ଷ ଭାବରେ ଏହାକୁ ଚିହ୍ନଟ କରିବାର ଆହ୍ୱାନ ଆମ ଆଗରେ ।

ଏ ପ୍ରସଙ୍ଗରେ ହେରୀ କୁକ୍ସନଙ୍କ ଏକ କବିତା ସ୍ୱତଃ ମନେପଡ଼େ:

ମୋ ମା କହିଲା
ଝିଅମାନଙ୍କୁ ପାଠ ପଢ଼େଇବା ବେକାର ।
ବିଛଣାରେ ଇତିହାସର କ'ଣ ଲାଭ ?
ସ୍ତ୍ରୀ ପାଖରେ ଅଛି ତା'ର ପ୍ରାକୃତିକ ପୁଞ୍ଜି
ପ୍ରତ୍ୟେକ ସ୍ତ୍ରୀକୁ ମିଳି ହିଁ ଯାଇଥାଏ
ଭଲ ପାଇବା କେବେ ନା କେବେ,
ସେମାନଙ୍କୁ ବି ଯେଉଁମାନେ ପିନ୍ଧନ୍ତି
ଦାମିକା ଶାଢ଼ୀ
ଓ ସେମାନଙ୍କୁ ବି ଯେଉଁମାନେ
ବେଢ଼େଇ ହୋଇଥନ୍ତି ଖଦଡ଼ିଆ କନ୍ଥା ।

ମୋ ମା କହିଲା:

ଝିଅମାନଙ୍କ ସବୁଠୁ ଭଲ ସାଙ୍ଗ ସେମାନଙ୍କ



Digitized by srujanika@gmail.com

ଦେହ

ତା'ହେଲେ ଝିଅମାନେ ବ୍ୟାବହାରିକ ହୁଅ

ଓ ନିଜର ଦେହ ବିକ

ବ୍ୟାବହାରିକ ହୁଅ ଓ ବିକ ନିଜର ମାଂସ

ସେଠି

ଯେଉଁଠି ମିଳିବ ତମକୁ ରୁଟି ।''

ପାମେଲା ବୋର୍ଡୋସର କାହାଣୀ ନାରୀର ଯୌନ ଶୋଷଣର କାହାଣୀ । ସେକ୍ସ, ଡ୍ରଗ୍, ଗୁପ୍ତଚର ବୃତ୍ତି, ରାଜନୀତିରେ ନାରୀଙ୍କୁ ନିୟୋଜିତ କରିବାର କାହାଣୀ । ଯୌନ ଉନ୍ମତ୍ତ ଉଚ୍ଚ ସମାଜର ନଗ୍ନ ଚିତ୍ର । ପାମେଲା ଆଉ ଥରେ ପ୍ରମାଣିତ କରିଦେଲେ ଯେ ଏ ଉଚ୍ଚ ଅଭିଜାତ ସମାଜ, ଏ ନବ୍ୟ ଧନ କୁବେର, ରାଜନେତା, ରାଜା ମହାରାଜା, ସାଧୁ ସନ୍ୟାସୀ, ଫୁଟପାଥର ଭୋକିଲା, ନଙ୍ଗଳା ଲୋକଙ୍କଠୁ ଅଧିକ ଘୃଣ୍ୟ, ଅଧିକ ଭୟଙ୍କର । ପାମେଲା ଆତ୍ମ ସ୍ୱୀକାର କରି କହନ୍ତି—

''ମୁଁ ବିବାହିତା ନୁହେଁ । ତେଣୁ ମୁଁ ପ୍ରତ୍ୟେକ ଲୋକ ସହ ଶୋଇପାରିବି, ଯାହା ସଙ୍ଗେ ବି ମନ ହେବ । ଜଣେ ପୁରୁଷ ଜଣେ ସ୍ତ୍ରୀକୁ ଭଲ ପାଇବାରେ ମନ୍ଦ କ'ଣ ? ଆପଣ କ'ଣ ନିଜ ସ୍ତ୍ରୀକୁ ଭଲପାଆନ୍ତି ନାହିଁ ? ଯଦି ଜଣେ ଲୋକ ତା' ସ୍ତ୍ରୀ ବନ୍ଧୁକୁ ଉପହାର ସ୍ୱରୂପ କିଛି ଲୁଗାପଟା ଦେଇପାରେ, ତାକୁ ଖୋଇବା ଲାଗି ଗୋଟେ ରେଷ୍ଟୋରାଁକୁ ନେଇପାରେ, ତା'ହେଲେ ତାକୁ ନଗଦ ଟଙ୍କା ଦେଇପାରିବ ନାହିଁ କାହିଁକି ? X X X X

ଯାହା କିଛି ମୁଁ କରୁଛି, ତାକୁ ମୁଁ ଘୃଣା କରୁଛି । ହେଲେ ମୁଁ କୌଣସି ପ୍ରକାରେ ହେଲେ ତାକୁ ବନ୍ଦ କରିପାରିବି ନାହିଁ । ସବୁଥର ମୁଁ କହେ ଯେ ଏଇଟା ବାସ୍ ଶେଷଥର, ଏହାପରେ ମୁଁ ଆଉ କରିବି ନାହିଁ ଏସବୁ । କାରଣ ସବୁଥର ମୋତେ ଘୃଣା ହୁଏ । ଯାହାକୁ ମୁଁ ଭଲପାଉ ନ ଥାଏ, ପସନ୍ଦ କରୁ ନଥାଏ, ଏମିତି କୌଣସି ଲୋକ ସହିତ ମୁଁ ଏମିତି କିଛି କରି ପାରେନା । ହେଲେ ଏ କାମର ରୋମାଞ୍ଚ, ଏହା ବଦଳରେ ସହଜରେ ମିଳୁଥିବା ଅର୍ଥର ଲୋଭ ପୁଣି ମୋତେ ଏସବୁ ଭିତରକୁ ଫେରେଇ ଆଣେ ।''

ବଡ଼ ବିଚିତ୍ର ଏ ଘୃଣା ଓ ଭଲପାଇବାର ଖେଳ । ଭାବ ଓ ଅଭାବର ଦୁନିଆଁର ମାନଚିତ୍ର । ନୀତି ଓ ଅନୀତି ଉପରେ ମାନବତାର ଉଜ୍ଜ୍ୱଳ ତାରକିତ ରଜନୀ ପାମେଲା । ଏମାନେ କାହାର ନ ହୋଇ ମଧ୍ୟ ସମସ୍ତଙ୍କର । ଦେଇ ଦେଇ ଏମାନେ ଦେବୀ । ଅତି ଆନ୍ତରିକତାର ସହ ଏମାନେ ଅନ୍ୟା, ଅନନ୍ୟା ।



Digitized by srujanika@gmail.com

ବେଶ୍ୟାବୃତ୍ତିର ଉନ୍ମୂଳନ ପ୍ରଶ୍ନ ସମ୍ପୂର୍ଣ୍ଣ ଅର୍ଥହୀନ । ପରମ୍ପରାଗତ କଳେବର ଛାଡ଼ି ଏବେ ତାହା ନୂଆ କଳେବର ଧାରଣ କରିଛି । ବେଶ୍ୟାଳୟ, କୋଠାର ବନ୍ଧନ ଏବେ ହୁଗୁଳା ହୋଇ ତାହା ରାଜପଥକୁ ପ୍ରସାରିତ ହେଲାଣି । କଲଗାର୍ଲ, ଷ୍ଟ୍ରୀଟ ଗାର୍ଲ, ହୋଟେଲ ଗାର୍ଲ ଆଦି କେତେ ଯେ ନିତ୍ୟ ନବରୂପ ପ୍ରକାଶ ପାଇବାରେ ଲାଗିଛି । ଏଥିରେ ଅନେକ ସୁବିଧା ମଧ୍ୟ ଅଛି । ଏବଂ ସେମାନେ ଅନେକ ଜଟିଳତା, ପୋଲିସ, ଦଲାଲ, ଦାଦା, ନେତା, ସଂରକ୍ଷିକା ଆଦିଙ୍କ ପାଉଣା ପଇଠ କରିବାରୁ ରକ୍ଷା ପାଇଥାନ୍ତି କିଛିକାଂଶରେ ।

ଯେତେବେଳେ ଏ ବେଶ୍ୟାବୃତ୍ତିର ଧନ୍ଦା ଆଦୌ ବନ୍ଦ ହୋଇପାରିବ ନାହିଁ; ସେତେବେଳେ ସରକାରୀ ସ୍ତରରେ ଏହାକୁ ଅନ୍ତତଃ ପକ୍ଷେ ଆଇନଗତ ସଂରକ୍ଷଣ ଦିଆଯାଇ ପାରନ୍ତା । ଯଦି ବେଶ୍ୟାମାନଙ୍କ ପଞ୍ଜିକରଣ ବ୍ୟବସ୍ଥା କରାଯାଇ ସେମାନଙ୍କୁ ଅନ୍ୟାନ୍ୟ ଦେଶଭଳି ବଧିବଦ୍ଧ ଲାଇସେନ୍ସ ପ୍ରଦାନ କରାଯାଇପାରନ୍ତା, ତେବେ ସେମାନଙ୍କ ଉପରେ ଚାଲିଥିବା ଶୋଷଣରୁ ଅନ୍ତତଃପକ୍ଷେ ସେମାନେ ଅନେକ ପରିମାଣରେ ମୁକ୍ତି ପାଇପାରନ୍ତେ ।

ଧୋବ ଧାଉଳିଆ ବାବୁ ସଂସ୍କୃତି ଓ ଅରାଜକତାବାଦୀ ତତ୍ତ୍ୱଙ୍କ ଶୋଷଣ ଫଳରେ ଏମାନଙ୍କର ଯେଉଁ ସ୍ଥିତି, ଲାଇସେନ୍ସ ବ୍ୟବସ୍ଥା ସେ କ୍ଷେତ୍ରରେ ଏକ ବୈପ୍ଳବିକ ପଦକ୍ଷେପ । ଏହା ଫଳରେ ସେମାନେ ଖାକୀ ପୋଷାକର ଏକଚ୍ଛତ୍ରବାଦିତାରୁ ବି ତ୍ରାହି ପାଇପାରନ୍ତେ । ସରକାର ଚାହିଁଲେ ଲାଇସେନ୍ସ ମାଧ୍ୟମରେ ଦେହ-ବେପାରର ବର୍ତ୍ତମାନ ରୋଗକୁ ନିୟନ୍ତ୍ରଣ କରି ବେଶ୍ୟାମାନଙ୍କ ସନ୍ତାନ ସନ୍ତତିକୁ ନୂଆ ଜୀବନ ଦାନ କରିପାରିବ ।

ଏ ଦିଗରେ ସେକ୍ସ ଶିକ୍ଷାର ମଧ୍ୟ ବ୍ୟାପକ ଉପଯୋଗିତା ରହିଛି । ଗତବର୍ଷ ନେଦରଲେଣ୍ଡର ଆବେଷ୍ଟରଡମ ନଗରୀରେ ଅନୁଷ୍ଠିତ ଦଶମ ଅନ୍ତର୍ଜାତୀୟ ଯୌନ ସମ୍ମିନୀରେ ଯୋଗ ଦେଇଥିବା ଭାରତୀୟ ପ୍ରତିନିଧି ଡା. ଅଞ୍ଜନା ସନ୍ଧୀର କହିଛନ୍ତି ଯେ- ୧୮୫୭ ମସିହାରୁ ନେଦରଲେଣ୍ଡରେ ଯୌନଶିକ୍ଷା ବିଷୟକ'' ରେଡ଼ିଓ ରୋମାଣ୍ଟିକା'' କାର୍ଯ୍ୟକ୍ରମ ପ୍ରଚାର କରାଯାଉଛି । ଏହି ଲୋକପ୍ରିୟ କାର୍ଯ୍ୟକ୍ରମ ସେ ଦେଶର ଯୌନଜୀବନରେ ଉଲ୍ଲେଖନୀୟ ପରିବର୍ତ୍ତନ ଆଣିଛି । ସେଠାକାର ଶତକଡ଼ା ପଞ୍ଚାଅଶି ଭାଗ ଉଚ୍ଚ ମାଧ୍ୟମିକ ବିଦ୍ୟାଳୟରେ ଯୌନଶିକ୍ଷା ପ୍ରଦାନ କରାଯାଉଛି । ଶହେ ବର୍ଷ ପୁରୁଣା ''ଭେନସ୍ ଟେମ୍ପଲ ସେକ୍ସ ମ୍ୟୁଜିୟମ୍ (VENUS TEMPLE SEX MUSEUM)ରେ ସମସ୍ତ ପ୍ରକାର ଯୌନ ଇତିହାସ, ଯୌନ ସାହିତ୍ୟ, ଭିଡ଼ିଓ ଫିଲମ, ମଡେଲ ଓ ଫେଟ ହାଉସ୍, ପ୍ଲେ ବୟ, ଭାଇବ୍ରେଟର ଓ ଜାତୀୟ ସମ୍ପର୍କ ଉପରେ ସବୁ ରକମ ତଥ୍ୟ ଗଚ୍ଛିତ ହୋଇ ରହିଛି । ସରକାରଙ୍କ ତରଫରୁ ବେଶ୍ୟାମାନଙ୍କ ସକାଶେ ସ୍ୱତନ୍ତ୍ର ଡାକ୍ତରୀ ଚିକିତ୍ସା, ପରୀକ୍ଷା ବ୍ୟବସ୍ଥା ଆଦି ରହିଛି । ଭାରତରେ ମଧ୍ୟ ଏସବୁର ବ୍ୟାପକ ଆବଶ୍ୟକତା ରହିଛି । ଅଜ୍ଞାନ ହିଁ ଯେତେ ପାପର କାରଣ ।''



Digitized by srujanika@gmail.com

**ପାପ-ପୁଣ୍ୟର ସୀମାରେଖା :**

ପ୍ରଖ୍ୟାତ ଭାରତୀୟ ଯୌନ ବିଜ୍ଞାନୀ ଡା. ପ୍ରକାଶ କୋଠାରୀ କହନ୍ତି ଯେ– ''ସେକ୍ସ ପୁଣ୍ୟ ନୁହେଁ କି ପାପ ବି ନୁହେଁ । ସେକ୍ସ ବିଷୟରେ ଜ୍ଞାନ ଓ ଅଜ୍ଞାନର ପ୍ରଶ୍ନ ହିଁ ହେଉଛି ଅସଲ କଥା । ଆଜିର ଯୁଗରେ କୌଣସି ଜ୍ଞାନକୁ ରହସ୍ୟର ପର୍ଦ୍ଦା ଢ଼ାଙ୍କି ରଖିବା କେବଳ ପାପ ନୁହେଁ, ଅପରାଧ ମଧ୍ୟ । କାରଣ ଏ ରହସ୍ୟାବୃତ୍ତି ପଛରେ ଚୋରି ଓ ଅପରାଧିକ ଭାବନା କାର୍ଯ୍ୟ କରିଥାଏ । ଲୁଚାଚୋରା କାମ ମନରେ ଭୟର ସଞ୍ଚାର କରେ । ଭୟଭୀତ ମଣିଷ ଗୋଟାଏ ଭୁଲକୁ ଘୋଡେଇବା ଲାଗି ହଜାରେ ଭୁଲ କରିବସେ । ଅଜ୍ଞାନ ଅନ୍ଧକାର ଭିତରେ ଏମିତି ବୁଡ଼ିଯାଏ ଯେ ନିଜ ସହିତ ନିଜ ପରିବାର, ସମାଜକୁ ମଧ୍ୟ ବୁଡ଼ାଇ ଦେଇଥାଏ । ସ୍ତ୍ରୀ-ପୁରୁଷର ଶାରୀରିକ ଓ ଆତ୍ମିକ ସମ୍ପର୍କରେ ଜ୍ଞାନ କଥା ପ୍ରଚାର କରି ଆମେ ଆଜିର ସମାଜକୁ ଅନ୍ଧାରରୁ ଆଲୋକକୁ ନେଇପାରିବା । ଏବଂ ଏହିଟା ସୁନିଶ୍ଚିତ ଭାବରେ ପୁଣ୍ୟ କର୍ମ ।'' ବସନ୍ତ ସାଠେ କହନ୍ତି– ''ଆଜିର ପାଶ୍ଚାତ୍ୟ ସଭ୍ୟତା ଲାଗି କାମକ୍ରୀଡ଼ା ବାସନାମୁଖୀ, ଆତ୍ମମୁଖୀ ନୁହେଁ । ଭାରତୀୟ ସଂସ୍କୃତି ଓ ପରମ୍ପରା ମତରେ 'କାମ' ଏକ ବରଦାନ । ଏହାର ଦୈବୀ ପ୍ରତିଷ୍ଠା ଓ ସ୍ଥାନ ରହିଛି କାମଦେବଙ୍କ ପ୍ରତୀକ ରୂପରେ । ମୋକ୍ଷ ଲାଗି ଧର୍ମ, ଅର୍ଥ ଓ କାମ ଅନିବାର୍ଯ୍ୟ ସର୍ତ୍ତ । ତେଣୁ ଏହା ଏକ ପୁଣ୍ୟ ଉପାର୍ଜନକାରୀ ତତ୍ତ୍ୱ ।

ଜଣେ ବରିଷ୍ଠ ସାମ୍ବାଦିକଙ୍କ ମତରେ କାମ ଉପରେ ସମଗ୍ର ସୃଷ୍ଟି ଅଧିଷ୍ଠିତ । ତା'ହେଲେ ଏହା ପାପ ହେବ କିପରି ? ଏହା ତ ମଣିଷର ଅତ୍ୟନ୍ତ ସ୍ୱାଭାବିକ ଭାବନା ।'

ଜଣେ ମହାନ୍ ସ୍ଥାପତ୍ୟ ଶିଳ୍ପୀ ସ୍ୱର୍ଗତ ଦେବୀ ପ୍ରସାଦ ରାୟ ଚୌଧୁରୀ କହିଥିଲେ ଯେ– ''ସ୍ତ୍ରୀ-ପୁରୁଷର ଶରୀର, ହାଡ଼, ମାଂସର ଆକାର ପ୍ରକାର, ବିକାଶ, ରୂପ-ରଙ୍ଗ, ସେଥିରେ ପ୍ରବାହିତ ହେଉଥିବା ରକ୍ତ, ଶ୍ୱାସ-ପ୍ରଶ୍ୱାସ, ଶରୀର ବ୍ୟବହାର, ତ୍ରିଭଙ୍ଗ, ନିହାର, ଅଭିସାର, କରୁଣା, ବିଭତ୍ସ ରସ, ବୀର୍ଯ୍ୟ ଆଦି ଭାବନା ସବୁ ଶରୀର ଦ୍ୱାରା ଆତ୍ମାର ହିଁ ଅଭିବ୍ୟକ୍ତି । ସେକ୍ସ ବିନା କଳା, ସାହିତ୍ୟ, ସଙ୍ଗୀତ, ରହସ୍ୟ, ସୌନ୍ଦର୍ଯ୍ୟ, ପ୍ରେରଣା, କଳ୍ପନା ସବୁ ବନ୍ଧ୍ୟା । ଗ୍ରୀକ୍, ରୋମ୍, ଇଉରୋପର ଶରାୟତ ମୂର୍ତ୍ତିକଳା, ଅଷ୍ଟାଦଶ-ଉନବିଂଶ ଶତାବ୍ଦୀର ଅଦ୍ୱିତୀୟ ଚିତ୍ରକଳାର ଶହ ଶହ ବର୍ଷ ପୂର୍ବରୁ ଭାରତୀୟ କଳାକାର କେବଳ ଶରୀର ନୁହେଁ, ତା' ଭିତରର ଜୀବନ୍ତ ଆତ୍ମା ଓ ତା'ର ଦୈବୀ ରୂପ ଅନୁଭବ କରି ସାରିଥିଲା । କୋଣାର୍କ, ଖଜୁରାହୋ, ଅଜନ୍ତା, ଏଲୋରାର କଳାରୁ ତଥାକଥିତ ଦେହ ଓ ସଂସର୍ଗର ପ୍ରତୀକ ଓ ଉପମା ଆଦିକୁ ବାଦ୍ ଦେଲେ ଆଉ ରହିବ କ'ଣ ? Sex is love, love is God.

ମୀନା କୁମାରୀ କହିଥିଲେ– ''ଦୁର୍ଭାଗ୍ୟର କଥା ଯେ ପାଶ୍ଚାତ୍ୟ ଦେଶ ଭଳି ଆମ ଦେଶରେ ବି ପ୍ରେମ ସ୍ତ୍ରୀ-ପୁରୁଷର ପବିତ୍ର ସମ୍ପର୍କ ନ ହୋଇ ପଣ୍ୟରେ ପରିଣତ । ପ୍ରସିଦ୍ଧ ସୁଫି



Digitized by srujanika@gmail.com

ସନ୍ଥ ଅବୁ ବାବା ତାଙ୍କ ଏକ ଉପଦେଶିକାରେ କହିଛନ୍ତି ଯେ, ସ୍ତ୍ରୀ ପୁରୁଷର ସମ୍ପର୍କ ଏକ ପବିତ୍ର ସମ୍ପର୍କ । ଯେତେ ଅବତାର ଓ ପୟଗମ୍ବରମାନେ ସେହି ମା ଅର୍ଥାତ୍ ନାରୀ ଗର୍ଭରୁ ହିଁ ସମ୍ଭୂତ । ଏହାହିଁ ହେଉଛି ପ୍ରକୃତିର ନିୟମ । ସ୍ତ୍ରୀ ପୁରୁଷ ସମ୍ପର୍କ କୌଣସି ପାପ ନୁହେଁ । ହେଲେ ସ୍ତ୍ରୀ ପୁରୁଷ ଈଶ୍ୱରଙ୍କ ଏହି ପବିତ୍ର ଅବଦାନକୁ ପଶୁଠାରୁ ମଧ ଘୃଣ୍ୟତମ ଭାବରେ ଅପଚୟ କରନ୍ତି । ସେମାନେ ସବୁ ପାପୀ । ପ୍ରକୃତି ଓ ସ୍ୱଭାବର ବିରୁଦ୍ଧାଚରଣ କାରୀମାନେ ପାପର ଅପରାଧୀ ।

ଦୟାକରି ସେକ୍‌ସକୁ ସେକ୍‌ସ ହିଁ ରହିବାକୁ ଦିଅ । ସେକ୍‌ସ ହେଉଛି ଶାନ୍ତିର ସଂବାହକ; ଯୁଦ୍ଧର ନୁହେଁ । ଭୋଗର ନୁହେଁ ଆନନ୍ଦର । ଏହି ପବିତ୍ର ସୁଖ ବ୍ରହ୍ମାନନ୍ଦର ସ୍ୱରୂପ । ମୁହୂର୍ତ୍ତିକ ବାସନା ପୂର୍ତ୍ତିର ଭୋଗ କାରବାର ନୁହେଁ ।

ସୁପ୍ରିମକୋର୍ଟର ବାରିଷ୍ଟର, ସମାଜସେବୀ ବି.ଆର. ଅଗ୍ରଓ୍ୱାଲାଙ୍କ ମତରେ– ''ଭାରତରେ ଯୌନ ଜ୍ଞାନକୁ ଖତମ୍ କରିବା ଲାଗି ଇଂରେଜମାନେ ହିଁ ଦାୟୀ । ସେମାନେ ବାଳ ବିବାହ, ସତୀପ୍ରଥା ଆଦି କୁସଂସ୍କାର ଦୂର କରିବା ଦିଗରେ ଚେଷ୍ଟା କଲେ, ହେଲେ ଯୌନ ଶିକ୍ଷାର ପରମ୍ପରାକୁ ସମ୍ପୂର୍ଣ୍ଣ ରୂପେ ଧ୍ୱଂସ କରିଦେଲେ । ଯଦିଓ ସେକ୍‌ସକୁ ସେମାନେ ଜୀବନରୁ ଦୂର କରିପାରିଲେ ନାହିଁ, ହେଲେ ତାକୁ ଏମିତି ଭାବରେ ଚାପିଦେଲେ ଯେ ଯୌନବିଜ୍ଞାନ ଅଣ୍ଡରଗ୍ରାଉଣ୍ଡ ହୋଇ ଗୁପ୍ତଜ୍ଞାନରେ ପରିଣତ ହେଲା ।''

ବାଇବେଲର 'ପୁରାତନ ଧର୍ମ' ଅନୁସାରେ ସ୍ତ୍ରୀ ପୁରୁଷର ବାମ ପାର୍ଶ୍ୱର ଗୋଟାଏ ପଞ୍ଜରା ହାଡ଼ରୁ ତିଆରି । ଗ୍ରୀକ୍ ଦାର୍ଶନିକ ପ୍ଲେଟୋଙ୍କ ଅନୁସାରେ ମଣିଷ ପ୍ରଥମେ ଉଭୟଲିଙ୍ଗୀ ଥିଲା । ତା' ଭିତରେ ସ୍ତ୍ରୀ ଓ ପୁରୁଷ ଉଭୟ ପ୍ରଜନନ ଅଙ୍ଗ ଥିଲା । ତା'ର ଚାରିଟା ହାତ, ଚାରିଟା ଗୋଡ଼ ଓ ଦୁଇଟା ମୁହଁ ଥିଲା । ସେ ଅତ୍ୟନ୍ତ ଶକ୍ତିଶାଳୀ ଥିଲା । ତେଣୁ ନିଜ ସୃଷ୍ଟିକର୍ତ୍ତା ଜିୟସଙ୍କ ବିରୋଧରେ ବିଦ୍ରୋହ କରିଦେଲା । ଜିୟସ ତାକୁ ଦଣ୍ଡ ଦେବାକୁ ଯାଇ ତାକୁ ମଝିରୁ ଦୁଇ ଭାଗ କରି କାଟିଦେଲେ । ଏକ ଭାଗ ପୁରୁଷ ଓ ଅନ୍ୟ ଏକ ଭାଗ ସ୍ତ୍ରୀ ହେଲା ।

ସେହିଦିନ ଠାରୁ ଏ ପର୍ଯ୍ୟନ୍ତ ଉଭୟେ ଉଭୟଙ୍କ ସହ ମିଳିତ ହେବା ଲାଗି ବ୍ୟାକୁଳ ହୋଇ ରହିଛନ୍ତି । ପ୍ରେମର ଉତ୍ତେଜନାମୟ ମୁହୂର୍ତ୍ତରେ ସେମାନେ ମିଶି ଏକ ହୁଅନ୍ତି । ଭାରତୀୟ ଅର୍ଦ୍ଧନାରୀଶ୍ୱରର ଅବଧାରଣା ମଧ ପୂର୍ଣ୍ଣ ପୁରୁଷର ପ୍ରତୀକ ।

## ଦେହ-ବିପଣୀ ଓ ଜାତିସଂଘର ରିପୋର୍ଟ :

ଜାତିସଂଘର ମାନବ ଅଧିକାର କମିଶନର ଏକ ବିଶେଷ ଅଧିବେଶନ ୧୯୯୧ରେ ଜେନେଭାଠାରେ ଅନୁଷ୍ଠିତ ହୋଇଥିଲା । ବଳପୂର୍ବକ କରାଯାଉଥିବା ବେଶ୍ୟାବୃତ୍ତି ଥିଲା



Digitized by srujanika@gmail.com

ଅଧିବେଶନର ଆଲୋଚ୍ୟ ବିଷୟ । ଏହା ଥିଲା ଏକ ଅତ୍ୟନ୍ତ ସମ୍ବେଦନଶୀଳ ଜଟିଳ ମାନବିକ ସମସ୍ୟା । ନାରୀ ମର୍ଯ୍ୟାଦା, ଗରିମା, ଚିନ୍ତା ଚେତନା ଓ କାର୍ଯ୍ୟର ସ୍ୱାଧୀନତା, ଦେହବେପାର ଆଦି ସମ୍ପର୍କୀୟ ଜାତିସଂଘର ଘୋଷଣାନାମା ଏବଂ ପରିଭାଷା ସହିତ ବିଶ୍ୱର ଅଧିକାଂଶ ଦେଶ ସମ୍ମତ ।

ଗତ ଦଶକମାନଙ୍କରେ ଇଉରୋପରେ ବଳିଷ୍ଠ ରୂପ ଧାରଣ କରିଥିବା ନାରୀବାଦ ଓ ନାରୀ ଆନ୍ଦୋଳନର ବ୍ୟାପକ ପ୍ରଭାବ ସେଠାକାର ନୀତିନିୟମ ଉପରେ ପଡ଼ିଛି । ନାରୀବାଦୀମାନଙ୍କ ଏକ ବିଶେଷ ଶ୍ରେଣୀ ମୁଖ୍ୟତଃ ଆମେରିକା ଓ ଇଉରୋପୀୟ ଦେଶଗୁଡ଼ିକରେ ଦେହ-ବେପାରକୁ ନାରୀର ସ୍ୱାଧୀନତା ବୋଲି ଗ୍ରହଣ କରିଛି ।

ଏହି ଅଧିବେଶନରେ ବିଭିନ୍ନ ଦେଶର ପ୍ରତିନିଧିମାନେ ଦାବି କଲେ ଯେ, ନାରୀର ଏକାଧିକ ପୁରୁଷ ସହ ଯୌନାଚାରର ଅଧିକାର ଉପରେ ଅଙ୍କୁଶ ପ୍ରୟୋଗ କରାଯିବା ଅନୁଚିତ । ପରୋକ୍ଷ ଭାବରେ ହେଲେ ମଧ୍ୟ ଦେହ-ବେପାର୍ ଏଥି ସହ ସଂପୃକ୍ତ । ସେମାନେ ଯୌନ ସମ୍ପର୍କ ଲାଗି ବଳ ପ୍ରୟୋଗ ଓ ବାଳ ବେଶ୍ୟାବୃତ୍ତି ଉପରେ ଅଙ୍କୁଶ ପ୍ରୟୋଗ କରିବାର ପରାମର୍ଶ ଦେଇଥିଲେ ।

ଇଉରୋପୀୟ ଦେଶଗୁଡ଼ିକରେ କୌଣସି ରକମ ପ୍ରତ୍ୟକ୍ଷ ଚାପ ବା ଜୋର୍ ଜବରଦସ୍ତି ବେଶ୍ୟାବୃତ୍ତିର ମୁଖ୍ୟ କାରଣ ହୋଇ ନାହିଁ । ତେଣୁ ଭାରତ ସମେତ ଅଧିକାଂଶ ଏସୀୟ ଦେଶରେ ବ୍ୟାପ୍ତ ବେଶ୍ୟାବୃତ୍ତି ଉପରେ ସେମାନେ ଅଧିକ ବ୍ୟାବହାରିକ ଭାବରେ ଚିନ୍ତା କରିପାରିବା କାଠିକର ପାଠ ।

ଏଣ୍ଟି ସେଭେରୀ ଇଣ୍ଟରନେଶନଲ୍, ୟୁନିସେଫ୍, ହ୍ୱିସ୍ପର (women hurt in systems of prostitution engaged in Revolt), council for prostitution Alternatives ଏବଂ ଆଇଲେଣ୍ଡର 'ଏକପେଟ୍' (And child prostitution in Asian tourism) ଆଦି ସଙ୍ଗଠନ ବେଶ୍ୟାବୃତ୍ତି ଉପରେ ବ୍ୟାପକ ଆଲୋଚନା କରିଥିଲେ ।

ଭାରତୀୟ ପ୍ରତିନିଧି କୈଳାସ ସତ୍ୟାର୍ଥୀ କହିଥିଲେ ଯେ, ସହରର କେତେକ ଆଭିଜାତ୍ୟ ଓ ମଧ୍ୟବିତ୍ତ ଝିଅଙ୍କ କଲଗାର୍ଲ ରେକେଟ୍‌କୁ ଛାଡ଼ି ଭାରତରେ ଚାଲିଥିବା ଶତକଡ଼ା ୨୦ ଭାଗ ଦେହ-ବେପାର ହେଉଛି ବଳାତ ବେଶ୍ୟାବୃତ୍ତି । କଲଗାର୍ଲ ମାନେ ବି ବିଶେଷ ଧରଣର ଶୋଷଣ ଦ୍ୱାରା ହିଁ ଏ ପେସାକୁ ଆସିବାକୁ ବାଧ୍ୟ କରାଯାଇଥାନ୍ତି ।

ଭାରତୀୟ ପରମ୍ପରା ଓ ସାମାଜିକ ମୂଲ୍ୟବୋଧ ଅନୁସାରେ ନାରୀର ବେଶ୍ୟାବୃତ୍ତି କରିବା ହେଉଛି ସବୁଠାରୁ ନିକୃଷ୍ଟ କାର୍ଯ୍ୟ । କୌଣସି ପ୍ରତ୍ୟକ୍ଷ ବା ପରୋକ୍ଷ ଚାପ ବିନା ଏସବୁ କରିବା ତା'ପକ୍ଷରେ ଅସମ୍ଭବ । ଶ୍ରୀ ସତ୍ୟାର୍ଥୀ ତାଙ୍କର ରିପୋର୍ଟରେ ଦର୍ଶାଇଥିଲେ ଯେ, ଭାରତୀୟ



Digitized by srujanika@gmail.com

ବେଶ୍ୟାଳୟର ଶତକଡ଼ା ନବେ ଭାଗ ବେଶ୍ୟା ହେଉଛନ୍ତି ଦାରିଦ୍ର୍ୟ ସୀମାରେଖା ତଳେ ଥିବା ପରିବାରର ବା ନ୍ୟୂନତମ ମଜୁରୀରୁ ମଧ୍ୟ କମ୍ ଆୟ କରୁଥିବା ପରିବାରର ସନ୍ତାନ । ସେହିପରି ଶତକଡ଼ା ଅଶୀ ଭାଗରୁ ବେଶି ସଂଖ୍ୟକ ବେଶ୍ୟା ଆଦିବାସୀ, ହରିଜନ, ମୁସଲିମ୍ ଆଦି ଅନୁନ୍ନତ ସଂପ୍ରଦାୟର ।

ରିପୋର୍ଟ ଅନୁସାରେ ଦେଶର ୧୬ଟି ପ୍ରଧାନ ନଗରୀରେ ବେଶ୍ୟାବୃତ୍ତିର କେନ୍ଦ୍ରୀୟ କାରବାର ଚାଲେ । ଏମାନଙ୍କ ମଧ୍ୟରୁ ଅଧିକାଂଶ ହେଉଛି ବିଭିନ୍ନ ରାଜ୍ୟର ରାଜଧାନୀ ବା ଆନ୍ତପ୍ରଦେଶ ସୀମାନ୍ତବର୍ତ୍ତୀ ସହର । ଦେଶର ଏକ ଶକ୍ତିଶାଳୀ ନେଟ୍‌ୱାର୍କ ଏହାର ପରିଚାଳନା କରୁଛି । ସାଧାରଣତଃ ଜଣେ ଜଣେ ସ୍ତ୍ରୀର ବିକ୍ରି ମୂଲ୍ୟ ୩୦୦୦ ରୁ ୧୦,୦୦୦ ଟଙ୍କା ପର୍ଯ୍ୟନ୍ତ ହୋଇଥାଏ ।

ଭାରତରେ ପ୍ରତିବର୍ଷ ଆନୁମାନିକ ୮୦୦ କୋଟି ଟଙ୍କାର ଦେହ-ବେପାର ହୋଇଥାଏ । ଏଥି ମଧ୍ୟରୁ ବେଶ୍ୟାମାନଙ୍କୁ ମାତ୍ର ୨୦୦ କୋଟି ଟଙ୍କା ମିଳିଥାଏ । ବାକି ଟଙ୍କା ବେଶ୍ୟାଳୟ ସଂରକ୍ଷକ, ଦଲାଲ, ପୋଲିସ, ନେତା, ଦାଦା ଆଦିଙ୍କ କମସନରେ ଯାଇଥାଏ । ଭାରତରେ ପ୍ରାୟ ୨୦ ଲକ୍ଷ ବେଶ୍ୟା ଅଛନ୍ତି । ପ୍ରତ୍ୟେକ ବେଶ୍ୟାର ହାରାହାରି ମାସିକ ଆୟ ପ୍ରାୟ ତିନିଶହରୁ ଚାରି ଶହ ଟଙ୍କା । ବାର୍ଷିକ ଆୟର ୬୦୦ କୋଟି ଟଙ୍କାରୁ କୋଠାର ମାଲିକାଣୀ, ଦଲାଲ, ପୋଲିସ ଓ ଅନ୍ୟ ପ୍ରଶାସନିକ କର୍ମଚାରୀ ଆଦି ନେଇଥାନ୍ତି ।

ଦିଲ୍ଲୀରେ ଅନ୍ୟୂନ ୮୨ଟି କୋଠା ରହିଛି । ପ୍ରତି କୋଠାରେ ପ୍ରାୟ ଦୁଇରୁ ତିନି ହଜାର ଯାଏଁ ବେଶ୍ୟା ରହନ୍ତି । ବମ୍ବେର କୋଠା ସଂଖ୍ୟା ପ୍ରାୟ ବାର ହଜାର । ସେଠାରେ ଅନ୍ୟୂନ ଲକ୍ଷେ ବେଶ୍ୟା ରହନ୍ତି । ବମ୍ବେ ବେଶ୍ୟାମାନଙ୍କ ଶତକଡ଼ା ୨୦ ଭାଗଙ୍କ ବୟସ ୧୮ ବର୍ଷରୁ କମ୍ ଏବଂ ଶତକଡ଼ା ୧୬ ଭାଗଙ୍କ ବୟସ ୧୬ ବର୍ଷରୁ କମ୍ । ଏଠାରେ ସବୁଠାରୁ କମ୍ ବୟସର ବେଶ୍ୟାର ବୟସ ମାତ୍ର ନ' ବର୍ଷ । କଲିକତାରେ ଏ ବେପାର ପ୍ରାୟ ଆଠଟା ଆଡ୍‌ଡାରେ ୪୮୦ଟି କୋଠାରେ ଚାଲିଛି ଏବଂ ସେଠାକାର ବେଶ୍ୟାଙ୍କ ସଂଖ୍ୟା ପ୍ରାୟ ୭ ହଜାର ବୋଲି ରିପୋର୍ଟରେ ଦର୍ଶାଯାଇଛି, ଯେତେବେଳେ କି ଏ ସଂଖ୍ୟା ଆହୁରି ଅଧିକା ।

**ବାଳ-ବେଶ୍ୟାବୃତ୍ତି :**

ଏ ବର୍ଷ ପ୍ରକାଶିତ ବିଶ୍ୱ ସ୍ୱାସ୍ଥ୍ୟ ସଙ୍ଗଠନର ଏକ ରିପୋର୍ଟରେ ପୁରୁଷ ବାଳ-ବେଶ୍ୟାବୃତ୍ତିର ଏକ ଚାଞ୍ଚଲ୍ୟକର ତଥ୍ୟ ଦେଖିବାକୁ ମିଳେ । ଏଡ୍‌ସ ଭଳି ଭୟାବହ ରୋଗ ଯୌନ ସଂକ୍ରମଣ ଦ୍ୱାରା ହୋଇଥିବା ତଥ୍ୟ ପ୍ରକାଶ ପାଇଲାପରେ ଦେହ-ବେପାର ଦୁନିଆଁରେ ସ୍ତ୍ରୀ ବେଶ୍ୟାମାନଙ୍କ ଆଦର ଦ୍ରୁତ ଗତିରେ କମିବାରେ ଲାଗିଛି । ଏହା ଫଳରେ ବାଳକ



Digitized by srujanika@gmail.com

ବେଶ୍ୟାବୃତ୍ତିର ବଜାର ସରଗରମ ହୋଇଉଠିଛି । ବିଳାସୀ ଧନିକମାନେ ଏବେ ଆଉ ସ୍ତ୍ରୀ ବେଶ୍ୟା ପଛରେ ନୁହେଁ ବାଳକ ବେଶ୍ୟାମାନଙ୍କ ପଛରେ  ପାଗଳ । ଏ କାମ ମଧ୍ୟ ଅନ୍ତର୍ଜାତୀୟ ସ୍ତରରେ ଏକ ସିଣ୍ଡିକେଟ ମାଧ୍ୟମରେ ପରିଚାଳିତ । ସ୍ତ୍ରୀ ବେଶ୍ୟାଙ୍କ ତୁଳନାରେ ଏମାନଙ୍କ ମୂଲ୍ୟ ବହୁ ବେଶୀ । ଏଥିରେ ବିଳାସୀମାନଙ୍କୁ ଏଡ୍‌ସର ଭୟ ଦେଖାଯାଉ ନାହିଁ । ଏ ବର୍ତ୍ତମାନ ଅପ୍ରାକୃତିକ ବ୍ୟଭିଚାର ନିରାକରଣ ନିମନ୍ତେ ସମଗ୍ର ବିଶ୍ୱ ଉଦ୍‌ବିଗ୍ନ ।

ଅବଶ୍ୟ ବାଳ-ବେଶ୍ୟାବୃତ୍ତିର ଏହା ଏକ ଅଭିନବ ରୂପ । ମଣିଷର ଇତିହାସରେ ମହାମନା ମୁନିଋଷିମାନେ ମଧ୍ୟ ମଣିଷେତର ଜୀବଜନ୍ତୁଙ୍କ ସହିତ ଯୌନାଚାର କରିଥିବାର ନଜିର ରହିଛି ।

ବୟସ୍କା ନାରୀଭୋଗରେ ବିରକ୍ତ ମଣିଷ ଏବେ ନୂଆ ସ୍ୱାଦର ସଂଧାନୀ । ବାଳ ବେଶ୍ୟାବୃତ୍ତି ଏବେ ବିଶ୍ୱବ୍ୟାପୀ ହୋଇଛି । ରୋଜର ସାୟର ତାଙ୍କର "children enslaved" ବହିରେ ଚାଞ୍ଚଲ୍ୟକର ତଥ୍ୟ ଦେଇଛନ୍ତି ଏ ବିଷୟରେ । ଏହି ବହିର ତଥ୍ୟ ଅନୁସାରେ ଶିଶୁମାନଙ୍କ ସହିତ ବୟସ୍କମାନଙ୍କ ଯୌନ ସମ୍ବନ୍ଧ ପ୍ରଦର୍ଶନକାରୀ ୨୬୪ଟି ଅଶ୍ଳୀଳ ପତ୍ରିକା ଏବେ ସମଗ୍ର ବିଶ୍ୱରେ ପ୍ରକାଶ ପାଉଛି । ଏଗୁଡ଼ିକର ସର୍କୁଲେଶନ ଲକ୍ଷ-ଲକ୍ଷ । ଏଥିରୁ ପ୍ରକାଶକମାନେ ବର୍ଷକୁ ୫୦ କୋଟି ଡଲାର ଲାଭ ପାଆନ୍ତି । ଲଣ୍ଡନ ପୋଲିସ ଏକ ଚଢ଼଼ଉ କରି ୧୫ ହଜାର ଭିଡ଼ିଓ ଫିଲମ୍ ଜବତ କରିଥିଲେ । ଏଥି ମଧ୍ୟରୁ ୪୦୦୦ଟି ଫିଲ୍ମ ବୟସ୍କମାନଙ୍କ ପିଲାଙ୍କ ସହ ଯୌନ ବିଷୟକ ଫିଲ୍ମ ଥିଲା ।

ବାଳ-ବେଶ୍ୟାଙ୍କ ମଧ୍ୟରେ ଉଭୟ ପୁଅ ଓ ଝିଅ ସମ୍ମିଳିତ । ଆମେରିକାର କେତେକ ବଡ଼ ସହରରେ ୧୨ ରୁ ୧୪ ବର୍ଷ ବୟସ୍କ ପିଲାମାନଙ୍କ ଷ୍ଟେବଲ ରହିଛି । ସେଠାରେ ବିକୃତ ମସ୍ତିଷ୍କ ପୁରୁଷ ଓ ମହିଳାମାନଙ୍କ ଯୌନ ସନ୍ତୋଷ ନିମନ୍ତେ ତାଲିମ ଦିଆ ଯାଇଥାଏ । ସେମାନଙ୍କୁ ବଜାରକୁ ଅଣାଯିବା ପୂର୍ବରୁ ବାରମ୍ବାର ଧର୍ଷଣ କରାଯାଇଥାଏ । ପେରିସ୍‌ରେ ୮୦୦୦ ଶିଶୁ ବେଶ୍ୟାବୃତ୍ତିରେ ସଂପୃକ୍ତ । ଥାଇଲେଣ୍ଡରେ ପ୍ରାୟ ୫୦,୦୦୦ ଓ ଫିଲିପାଇନ୍‌ସରେ ୨୫,୦୦୦ ଶିଶୁ ଏ ବେପାରରେ ଲାଗିଛନ୍ତି । ଏଥିରେ ୭ରୁ ୧୫ ବର୍ଷ ବୟସର ପୁଅ ଝିଅ ଅଛନ୍ତି ।

୧୧ରୁ ୧୩ବର୍ଷ ବୟସର ନାବାଳିକା ଝିଅମାନଙ୍କ କିଣା ବିକାର ମୁଖ୍ୟ କେନ୍ଦ୍ର ହେଉଛି ରାଜସ୍ଥାନର ଧୌଲପୁର, ଉତ୍ତର-ପ୍ରଦେଶର ବସଇ-ଖୁର୍ଦ୍ଦ, ଆନ୍ଧ୍ରର ଜଙ୍ଗଲପୀଠ ଓ ହାଇଦ୍ରାବାଦ, ମହାରାଷ୍ଟ୍ରର ପୁଣେ, ବିହାରର ମୁଜଫରପୁର,ଓଡ଼ିଶାର ଭୁବନେଶ୍ୱର, ହିମାଚଳ ପ୍ରଦେଶର ମଣ୍ଡି ଆଦି । ଏତଦ୍‌ଭିନ୍ନ ନେପାଳରୁ ପ୍ରତିବର୍ଷ ଅନ୍ୟୁନ ୩ ଲକ୍ଷ ଝିଅ ଦେହ-ବେପାର ଲାଗି ଭାରତକୁ ଅଣାଯାଇଥାନ୍ତି ।



Digitized by srujanika@gmail.com

**ପତିତା ଈଶ୍ୱରୀ :**

ସ୍ତ୍ରୀ ଜାତିର ଭୂୟୋବିକାଶର ନଗ୍ନ ଚିତ୍ରଣ କରି ଧର୍ମ, ସମାଜ, ସାହିତ୍ୟ, ସଂସ୍କୃତି, ସଭ୍ୟତାରେ ତା'ର ଅଧିଗ୍ରହଣ ସମ୍ପର୍କରେ ସିମୋ-ଦ-ବଭିଅର କଠୋର ମନ୍ତବ୍ୟ କରିଛନ୍ତି । ତାଙ୍କର ପ୍ରଖ୍ୟାତ ଗ୍ରନ୍ଥ 'ଦ ସେକେଣ୍ଡ ସେକ୍ସ'ରେ ସେ ଦର୍ଶାଇଛନ୍ତି ଯେ, ନାରୀର ଅଧିନସ୍ଥ ସ୍ଥିତି ସ୍ୱର୍ଗରୁ ହିଁ ଅବଧାରିତ ହୋଇଥାଏ ଓ ପୃଥିବୀରେ ସେମାନଙ୍କୁ ସେ ସବୁ ଅବଧାରିତ ସୁବିଧା ଦିଆଯାଉଛି ବୋଲି ରାଜନୀତିଜ୍ଞ, ବିଧାୟକ, ପୁରୋହିତ, ଦାର୍ଶନିକ, ଲେଖକ ଓ ବୈଜ୍ଞାନିକଗଣ ଦର୍ଶାଇବାର ଚେଷ୍ଟା କରି ଆସିଛନ୍ତି । ଯେଉଁ ଧର୍ମର ଅନୁସରଣ ପୁରୁଷ କରି ଆସିଛି, ତାହା ତା'ର ଆଧିପତ୍ୟ ବିସ୍ତାର କାମନାର ହିଁ ଅନୁଚିନ୍ତା । ବ୍ୟଙ୍ଗକାର ଓ ନୀତିବାଗୀଶ ପଣ୍ଡିତମାନେ ଆଦିକାଳରୁ ହିଁ ସ୍ତ୍ରୀର ଦୁର୍ବଳତାକୁ ଭଗାରିବାର ଆନନ୍ଦରେ ମତ୍ତ ।

ସାହିତ୍ୟରେ ନାରୀ ବିରୋଧରେ କରା ଯାଇଥିବା ବର୍ବର ଦୋଷାରୋପ କଥା ଆମ ସମସ୍ତଙ୍କ ଜଣାଶୁଣା । ଏହି ବିଦ୍ୱେଷ ସଂପୂର୍ଣ୍ଣ ଆଧାରହୀନ ହୋଇ ନ ଥିଲେ ହେଁ ଅଧିକାଂଶତଃ ଅକାରଣ ।

ଏହାର ଅନେକ ପୂର୍ବରୁ ଜନୈକ ନାରୀବାଦୀ କହିଥିଲେ ଯେ :

''ଏ ଯାଏଁ ନାରୀ ବିଷୟରେ ପୁରୁଷମାନେ ଯାହା ଲେଖି ଆସିଛନ୍ତି, ତା' ଉପରେ ସନ୍ଦେହ କରିବାର ଯଥେଷ୍ଟ କାରଣ ରହିଛି । ସେସବୁ ଉପରେ ସନ୍ଦେହ କରାଯିବା ଉଚିତ । କାରଣ ଏହି ଲେଖିବା ଲୋକେ ହେଉଛନ୍ତି ଖୋଦ୍ ବିଚାରକ ଓ ଅପରାଧୀ ଉଭୟ ।''

ଅନ୍ୟ ଜଣେ ବିଦ୍ୱାନଙ୍କ ମତରେ ''ପୁରୁଷକୁ କ୍ଷମା କରିବା ଅପେକ୍ଷା ନାରୀ ଉପରେ ଦୋଷାରୋପ କରିବା ଆପାତଃ ସହଜ କାମ ।'' ଆଦିମ ଯାଯାବର ଜୀବନ ପରବର୍ତ୍ତୀ କୃଷି ଯୁଗରେ ବ୍ୟଭିଚାରକୁ ସାମୂହିକ ଜୀବନରେ ମାନ୍ୟତା ପ୍ରଦାନ କରାଯାଇ ନଥିଲା । ସେତେବେଳେ ବିବାହ କୌଣସି ରହସ୍ୟମୟ ଜୀବନର ଚାବିକାଠି ନଥିଲା କି ସ୍ତ୍ରୀ ପତିର ଦାସୀ ନ ଥିଲା । ବଂଶର ନାମ ମା' ଅନୁସାରେ ଚାଲୁଥିଲା ଓ ସାମୁହକ ଜୀବନର, ଗଣ ସଂପତ୍ତିର ମାଲିକାନା ସ୍ୱତ୍ୱ ନାରୀ ହାତରେ ଥିଲା ।

ଋକ୍‌ବେଦର ଚାଚାମାନଙ୍କରେ ନାରୀର ବନ୍ଦନା ବ୍ରାହ୍ମଣ ଯୁଗରେ କ୍ରମଶଃ ହ୍ରାସ ପାଇ ପୁରୁଷ ପ୍ରାଧାନ୍ୟ ପ୍ରତିଷ୍ଠିତ ହେଲା । ପିତୃକୈନ୍ଦ୍ରିକ ସମାଜ ସଙ୍ଗଠନ ସମୟରୁ ହିଁ ନାରୀର ସାମାଜିକ ଜୀବନର ପତନର ଅୟମାରମ୍ଭ ।

ସ୍ତ୍ରୀର ଉର୍ବରା ଶକ୍ତିକୁ ବ୍ରାହ୍ମଣ ଯୁଗରେ ଦେବୀ ରୂପରେ ପୂଜାକରି, ଦେବୀତ୍ୱ ନାମରେ ତାକୁ ମାନବ-ଜୀବନରୁ କାଟି ଦିଆଗଲା । ମନୁସଂହତା ନାରୀକୁ ''ବନ୍ଧନରେ ରଖାଯିବା ଯୋଗ୍ୟ ନିକୃଷ୍ଟ ବସ୍ତୁ'' ବୋଲି କହିଲାବେଳେ ରୋମାନ୍ ଆଇନ ତା' ମୂଢ଼ତାକୁ ଲଗାମ୍ ଦେବା ଲାଗି



Digitized by srujanika@gmail.com

ନାରୀକୁ ପୁରୁଷ ସଂରକ୍ଷଣରେ ରଖିବାର ବ୍ୟବସ୍ଥା କଲା । କେନନ୍ ଆଇନ ନାରୀକୁ ''ସଇତାନର ପଥ'' କହିଲାବେଳେ 'କୁରାନ୍'ରେ ତା' ପ୍ରତି ଉପେକ୍ଷା ଭାବ ପ୍ରକାଶ ପାଇଲା ।

ମଧ୍ୟଯୁଗରେ ପ୍ରତ୍ୟେକ ଦେଶରେ ବ୍ୟକ୍ତିଗତ ସମ୍ପତ୍ତିର ଅବଧାରଣା ପ୍ରଚଳିତ ଥିଲା । ସେତେବେଳେ ପରିବାର ଥିଲା ଏକ ସୁଦୃଢ଼ ସଙ୍ଗଠନ ଏବଂ ପରିବାରର ହିତ ଥିଲା ସର୍ବୋପରି ।

ପୃଥିବୀର ସବୁ ଦେଶରେ ବିଶ୍ୱସ୍ତ ଓ ପବିତ୍ର ସ୍ତ୍ରୀକୁ ପରିବାର ଭିତରେ ବନ୍ଦୀ କରି ରଖିବାର ଫଳ ସ୍ୱରୂପ ବେଶ୍ୟାବୃତ୍ତି ଉତ୍ସାହିତ ହେଲା । ସମାଜର ମାର୍ଜିନରେ ଠିଆ ହୋଇଥିବା ଏହି ''ସ୍ତ୍ରୀମାନେ ସମାଜକୁ ସୁସ୍ଥ ରଖିବା ଦିଗରେ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରନ୍ତି'' ବୋଲି ଖ୍ରୀଷ୍ଟିୟାନ ଧର୍ମଗୁରୁମାନେ ଚିନ୍ତା କରୁଥିଲେ । ଯଦିଓ ସେମାନଙ୍କ ଦୃଷ୍ଟିରେ ବେଶ୍ୟାମାନେ ''ଜଘନ୍ୟ'' ଥିଲେ, ''ପାପିଷ୍ଠା'' ଥିଲେ, ହେଲେ ବିଶ୍ୱାସ କରାଯାଉଥିଲା ଯେ, ବେଶ୍ୟାବୃତ୍ତିକୁ ଶେଷ କରିଦେଲେ ସମାଜରେ, ପରିବାରରେ ବ୍ୟଭିଚାର ବୃଦ୍ଧି ପାଇବ, କାରଣ ପୁରୁଷ ସ୍ୱଭାବତଃ ଚଞ୍ଚଳ ପ୍ରକୃତିର ।

ସହରରେ ବେଶ୍ୟାମାନଙ୍କର ଆବଶ୍ୟକତା ସେତିକି; ଅଳିଆ ଆବର୍ଜନା ସଫେଇ ଲାଗି ନାଳି ନର୍ଦ୍ଦମାର ଆବଶ୍ୟକତା ଯେତିକି । ବୁର୍ଜୁଆ ପରିବାରରେ ଏକବିବାହ ପ୍ରଥା କଠୋର ଭାବରେ ପ୍ରଚଳିତ ଥିଲା, ତେଣୁ ଆମୋଦପ୍ରମୋଦ କରିବା ନିମନ୍ତେ ପୁରୁଷକୁ ବାହାରକୁ ଯିବାକୁ ହିଁ ପଡୁଥିଲା । ସାପେନ୍ ହାଓ୍ୱାର ଏହି ବେଶ୍ୟାମାନଙ୍କ ଲାଗି କହିଛନ୍ତି ଯେ– ''ସେମାନେ ହେଉଛନ୍ତି ସର୍ବଶ୍ରେଷ୍ଠ ପାପ; କାରଣ ସେମାନେ ପୁଣ୍ୟର ସଂରକ୍ଷିକା ।''

ନାରୀକୁ ଏକେତ ଦେବୀର ସର୍ବୋଚ୍ଚ ଆସନ ଦିଆଯାଇଛି ନହେଲେ ସର୍ବନିମ୍ନ ପତିତାର ଆସନ । ତା'କୁ ମଣିଷ ବୋଲି ଗ୍ରହଣ କରିବାକୁ ନିର୍ବାସିତ କରାଯାଇଛି ସବୁ ସମୟରେ । ତା'କୁ ବିଭିନ୍ନ ଦେଶ ସାମ୍ବିଧାନିକ ସୀମିତ ଅଧିକାର ଦେଇଥିଲେ ହେଁ ତା' ଲାଗି ସ୍ୱାଧୀନ ସାମାଜିକ ଅଧିକାର ଏକ ଦୁଃସ୍ୱପ୍ନ ହୋଇ ରହିଛି ଚିରକାଳ ।

ବିଭିନ୍ନ ସମୟରେ ନାରୀକୁ ନର୍କ ଓ ଅନ୍ଧାରର ପର୍ଯ୍ୟାୟବାଚୀ ଭାବରେ ଅବହିତ କରା ଯାଇଛି । ମୃତ୍ୟୁକୁ ମଧ୍ୟ ଅନ୍ଧାର ଓ ନାରୀର ପର୍ଯ୍ୟାୟବାଚୀ ଭାବରେ ଜୀବନର ମୃତ୍ୟୁ କୁ ଅନ୍ଧାରୀ ବିଜେକୁ ମଧ୍ୟ ଏକରକମ ସେକ୍ସର ରୂପାୟନ ବୋଲି ବର୍ଣ୍ଣନା କରା ଯାଇଛି । ତନ୍ତ୍ରରେ ତ ଧର୍ମ ନାମରେ ଯୌନୋତ୍ସବର ଦର୍ଶନ ମିଳେ ।

ଜଣେ ପୁରୁଷ ଯେତେବେଳେ ଜଣେ ବେଶ୍ୟା ସଙ୍ଗେ ଶୋଇବାକୁ ଯାଏ, ସେତେବେଳେ ତା'ର ମନେହୁଏ ଯେ, ସେ ଯେପରି ଜୀବନ, ମୃତ୍ୟୁ ଓ ବିଶ୍ୱର ଅତଳ ଗଭୀରତାକୁ ସ୍ପର୍ଶ କରୁଛି । ଅନୁଭବ କରୁଛି । ସେ ତା'ର ଗଭୀର, ଆର୍ଦ୍ର ଯୋନି ଭିତରେ ସତେ ଯେପରି ଈଶ୍ୱରଙ୍କର ନିକଟତର ହେଉଛି । ପ୍ରାରମ୍ଭିକ ଦୃଷ୍ଟିରେ ଯୌନ ତୃପ୍ତିକୁ ସମସ୍ତ ରକମ ଶାନ୍ତିର ସ୍ରୋତ ବୋଲି



Digitized by srujanika@gmail.com

ଗ୍ରହଣ କରାଯାଇଛି । କେତେକ ଧର୍ମରେ ଏହାକୁ "ମହାସମାଧି" ଅଥବା "ବ୍ରହ୍ମକୁ ସାକ୍ଷାତ୍କାର'ର ମାଧ୍ୟମ ରୂପେ ଗ୍ରହଣ କରାଯାଇଥିଲା ।

**ବେଶ୍ୟାଳୟକୁ ସ୍ତ୍ରୀ ନୁହେଁ ପୁରୁଷ ହିଁ ଯାଏ :**

ଇତିହାସ ପର୍ଯ୍ୟାଲୋଚନା କଲେ ଜଣାଯାଏ ଯେ, କେବଳ ଅର୍ଥନୈତିକ କି ସାମାଜିକ କାରଣ ଯୋଗୁଁ ଏ ବେଶ୍ୟାବୃତ୍ତି ଉଧେଇ ନାହିଁ । ଅତୀତର ସ୍ୱର୍ଣ୍ଣମୟୀ ଭାରତ ବା ଆଜିର ଅଳକାପୁରୀ ଆମେରିକାରେ ଏ ବ୍ୟବସାୟ ନଥାନ୍ତା । ସେହିପରି ଉଚ୍ଚତର ସମାଜରେ ମଧ୍ୟ ଏହାର ପ୍ରଚଳନ ବେଶୀ । ଯାହା ପାଖରେ ଖାଇବାକୁ ଅର୍ଥ ନାହିଁ ସେ ଏହି 'ମାଂସଭୋଜି' ଲାଗି ଅର୍ଥ ପାଇବ କେଉଁଠୁ ?

ଦରିଦ୍ର, ଅନୁନ୍ନତ, ବିକାଶମୁଖୀ, ତୃତୀୟ ବିଶ୍ୱରେ ବି ଏହାର ପ୍ରଚଳନ ବେଶୀ । ଉନ୍ନତ ରାଷ୍ଟ୍ରରେ ଏହି ଦେହବିଳାସ ଏକରକମ ଆମୋଦ ହୋଇଥିଲାବେଳେ, ଦରିଦ୍ର ରାଷ୍ଟ୍ର ନିଗ୍ରୋ ହାର୍ଲେମ ସିଟି, କଳାହାଣ୍ଡି ମାନଙ୍କରେ ଏହା ପେଟ ପାଟଣାର ଏକ ଦୟନୀୟ ଆବଶ୍ୟକତା । ମନୋରଞ୍ଜନ ଓ ଜୀବିକା ପର୍ଯ୍ୟନ୍ତ ଏ ଆମୋଦ ଓ ଆବଶ୍ୟକତାର ସଂସାର ।

ଏହା ଏକ ଏମିତି ନିଶା, ଯାହା ଯେତେ ପୁରୁଣା ହୁଏ, ସେତେ ବେଶୀ ଘାରେ । ବିବାହ ଓ ବେଶ୍ୟାବୃତ୍ତି ଭିତରେ କେବଳ ଏତିକି ଯାହା ଫରକ – ବିବାହ ଏକ ଆଇନସମ୍ମତ ବେଶ୍ୟାବୃତ୍ତି ହୋଇଥିଲାବେଳେ ବେଶ୍ୟାବୃତ୍ତିର କୌଣସି ଆଇନ୍ ନଥାଏ ।

ଯେଉଁମାନେ କେବଳ ଆଇନ ଦ୍ୱାରା ବେଶ୍ୟାବୃତ୍ତିକୁ ଶେଷ କରିବାର ଦିବାସ୍ୱପ୍ନ ଦେଖନ୍ତି, ସେମାନେ କେବଳ ସେହିମାନଙ୍କୁ ଆଖି ଆଗରେ ରଖିଥାନ୍ତି, ଯେଉଁମାନଙ୍କୁ ବେଶ୍ୟାବୃତ୍ତି କରିବା ଲାଗି ବାଧ୍ୟ କରାଯାଇଥାଏ । ହେଲେ ସେମାନେ ସେମାନଙ୍କ କଥା ଚିନ୍ତା କରନ୍ତି ନାହିଁ, ଯେଉଁମାନେ ନାରୀକୁ ବେଶ୍ୟା ହେବାଲାଗି ବିବଶ କରିଥାନ୍ତି । ଯଦି କୌଣସି ସଫଳ ଆଇନ ଦ୍ୱାରା ପୁରୁଷକୁ ବେଶ୍ୟାଳୟ ଯିବା ଉପରେ କଟକଣା ଲାଗୁ କରାଯାଇପାରିବ, ତେବେ ବେଶ୍ୟାବୃତ୍ତି ସ୍ୱତଃ କିଛି ପରିମାଣରେ କମ୍ ହୋଇଯିବ । କାରଣ ବେଶ୍ୟାଳୟକୁ ସ୍ତ୍ରୀ ନୁହେଁ ପୁରୁଷ ହିଁ ଯାଇଥାଏ ।

**ନିଜ ଝିଅ ସଙ୍ଗେ ଶୋଉଥିବା ଲୋକେ :**

ବେଶ୍ୟାବୃତ୍ତି ସଂପର୍କରେ ବେଶ୍ୟାମାନେ ନିଜେ କହୁଥିବା କଥା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଆକାଶବାଣୀର 'ଦେହଗାଥା' ରୂପକ କାର୍ଯ୍ୟକ୍ରମରେ ଜଣେ ବେଶ୍ୟା ରୂପମତୀ ଉଚ୍ଚଜାତିର ସଂସ୍ପର୍ଶରେ ଆସି ସେମାନଙ୍କ ଘରଦ୍ୱାର, ମନ୍ଦିର ଓ କୂଅରୁ ବେଶୀ ପବିତ୍ର ହୋଇ ଯାଇଥିବା



Digitized by srujanika@gmail.com

କଥା କହେ । ସେମାନଙ୍କ ଖଟ, ପଲଙ୍କ, ବିଛଣା, ଥାଳି, ଗ୍ଲାସ, ଚାମୁଚ, ଚେହେରା, ଓଠ, ଅଙ୍ଗ, ପ୍ରତ୍ୟଙ୍ଗ ପବିତ୍ର ହୋଇ ଥିବା କଥା କହି ସେ ନିଜକୁ "ପରଶମଣି" ହୋଇ ଯାଇଥିବା କଥା ଦର୍ଶାଏ । ରୂପମତି ପୁଣି କହେ— "ଆମ ପାଖକୁ ଯିଏ ଆସେ, ସେ ଉଚ୍ଚ ନୀଚ ଭେଦଭାବ ଭୁଲିଯାଏ ।" ସେ ଗମ୍ଭୀର ହୋଇ କହେ:

"ଆମର ମାନ ଅପମାନ କ'ଣ ବାବୁ ? ମାନ ଅପମାନ ତ ସେମାନଙ୍କର, ଯେଉଁମାନଙ୍କର ଆମେ ସନ୍ତାନ । ଆମେ କୌଣସି ଛୋଟକାଟିଆ ଲୋକର ଝିଅ ହୋଇ ନାହୁଁ । ଆଉ ମଜା କଥା କ'ଣ ଜାଣିଛ ବାବୁ, ଶହ ଶହ ବର୍ଷ ଧରି ଏ ତଥାକଥିତ ବଡ଼ ଜାତିର ଲୋକେ ନିଜ ଝିଅ ସଙ୍ଗେ ଶୋଇ ଆସୁଛନ୍ତି । ଆଜି ଯାଏଁ ଆମ ଘରକୁ ଗରିବ ଲୋକଟେ ଆସିନି । ବାପକୁ ଯଦି ପାପ ଲାଗୁଥାନ୍ତା, ତା'ହେଲେ ତ ଆଜିଯାଏଁ ପୁରୁଷ ଜାତିର ଅନେକ ପରିବର୍ତ୍ତନ ହୋଇ ସାରିଥାନ୍ତା । ଭଗବାନ ବି ପୁରୁଷ ଜାତିକୁ ସାହାଯ୍ୟ କରେ ବାବୁ । ଅବଳା ନାରୀ ପ୍ରତି କେହି କେବେ ଧ୍ୟାନ ବି ଦିଅନ୍ତି ନାହିଁ ।"

ଆଉ ଜଣେ ବେଶ୍ୟା କହନ୍ତି:

ଆରେ ବାବୁ, ଆଇନ ବଡ଼ ଲୋକଙ୍କ ଲାଗି ନ ଥାଏ । ସେମାନଙ୍କ ପାଖରେ ଟଙ୍କା ଥାଏ, ଓକିଲ ଥାଏ । ସେମାନଙ୍କ ସାହାଯ୍ୟରେ ଆଇନର ଅର୍ଥ ବଦଳି ଯାଏ । ବିପଦ ତ ସବୁବେଳେ ଗରିବ ଲୋକର, ଯାହା ପାଖରେ ନା ଥାଏ ଟଙ୍କା ନା ଓକିଲ । ସ୍ତ୍ରୀକୁ ହିଁ ସ୍ତ୍ରୀଠାରୁ ବେଶି ବିପଦ । ମରଦ ତା'ର ମହତ ଲୁଟେ । ହେଲେ ଲୁଟାଏ କିଏ, ସ୍ତ୍ରୀ ତ ?

: ଆପଣ ହିଁ କହନ୍ତୁ, ଆମଠୁ ବଳି ଭେଦଭାବ ମେଣ୍ଟାଇବାର ଶକ୍ତି ଆଉ କାହା ପାଖରେ ଥାଏ ? ଅଛି କାହା ପାଖରେ ? ଆଉ କେଉଁଠିକି ଯାଇ ମଣିଷ କ'ଣ ନିଜ ଜାତି ଗୋତ୍ର ଭୁଲିପାରେ ? ଆରେ ବାବୁ ମଦ ଭାଟି ଓ ଦାରୀ ଘର, ଏସବୁ ଜାଗାତ ପୂଜା, ମନ୍ଦିରଠାରୁ ଅନେକ ବଡ଼ ।

: ଯଦି ଆମକୁ ଡାକିବା ଲାଗି କେହି ନ ଥିବେ, ତେବେ ଧନ୍ଦାଟା ତ ଆପେ ଆପେ ବନ୍ଦ ହୋଇଯିବ । ଆମେ କମ୍ବଳକୁ ଛାଡ଼ିବାକୁ ଚାହୁଁ, ହେଲେ କମ୍ବଳଟା ଆମକୁ ଛାଡ଼ିଲେ ତ ? ରୂପ ବଦଳିପାରେ, ମଣିଷ ବଦଳି ପାରନ୍ତି, ହେଲେ ଧନ୍ଦାଟା ବଦଳେ ନାହିଁ । ନେତା ସାଜି ବଡ଼ ବଡ଼ ଭାଷଣ ଝାଡ଼ିବା ଓ ରାତିରେ ରେଷ୍ଟ ହାଉସକୁ ଝିଅ ଡାକି, ତା' ହାତରୁ ମଦ ଖାଇ, ତା' ଜଂଘ ସନ୍ଧିରେ ମୁହଁ ଗୁଞ୍ଜି ଶୋଇବା, ଆମେ ତ ଏ ଯାଏଁ ଏସବୁ ଦେଖି ଆସିଛୁ । ସମସ୍ତେ ସ୍ୱାର୍ଥପର । ନିଜ ନିଜ ସ୍ୱାର୍ଥ ଲାଗି ଆମକୁ ବଳିର ବୋଦାପରି ବ୍ୟବହାର କରାଯାଉଛି ।

: ଏ ସହରୀ ଲୋକମାନେ ହାତରେ ସଭ୍ୟତାର ପତାକା ଧରି, ଆଖିରେ ସଂସ୍କାରବାଦୀ ଚଷମା ପିନ୍ଧି; ନିଜ ରଙ୍ଗରେ ହିଁ ଦୁନିଆଁକୁ ଦେଖିବାଟା ବନ୍ଦ କରିପାରିବେ ନାହିଁ । ହେଲେ ଆମ



Digitized by srujanika@gmail.com

ପାଖରେ ବି ଚଷମା ଅଛି । ଆମେ ବି ସହରକୁ ଦେଖୁଛୁ । ମାଦକ ଦ୍ରବ୍ୟ, ଡ୍ରଗ୍ ବିକୁଥିବା ଲୋକେ କୋଠାଘରେ ରହନ୍ତି । ତସ୍କରମାନେ ସମ୍ମାନ ପାଆନ୍ତି । ଗୁଣ୍ଡାମାନେ ନେତା ହୁଅନ୍ତି ଏବଂ ବାହୁବଳରେ ଭୋଟ ଜିତନ୍ତି । ସେମାନଙ୍କୁ ସୁଧାରିବା ବଦଳରେ ରାଜନୈତିକ ଦଳ ସବୁ ଟିକଟ ଦେଇଥାନ୍ତି । ଏବେ ଆପଣ ନିଜେ ହିଁ ବିଚାର କରନ୍ତୁ ଯେ ଅସଲ ଅପରାଧୀ କିଏ ? ସେମାନେ ନା ଆମେ ?''

ବେଶ୍ୟାବୃତ୍ତି ଫଳରେ କେବଳ ନାରୀକୁ ହିଁ କାହିଁକି ପତିତା, ଅପବିତ୍ର ମନେ କରାଯାଇଥାଏ ? ପୁରୁଷ କାହିଁକି ପତିତ, ଅପବିତ୍ର ହୁଏ ନାହିଁ, ଯେତେବେଳେ କି ଅସଲ ଦୋଷ ପୁରୁଷର ? ସମାଜର ଏ ଦୋମୁହାଁ, ପକ୍ଷପାତପୂର୍ଣ୍ଣ ନୀତି କାହିଁକି ? ନାରୀ ବିନା କେହି ଚଳିପାରନ୍ତି ନାହିଁ । ନାରୀ ବିନା ବଂଶବୃକ୍ଷ ଚାଲେ ନାହିଁ । ନାରୀ ବିନା ସୃଷ୍ଟି ଧ୍ୱଂସ ପାଏ ? ତେବେ ଏ ଆଦିମା ବିଧାତ୍ରୀ ପ୍ରତି ମଣିଷର ଅନ୍ୟାୟ କାହିଁକି ? ''ଅର୍ଦ୍ଧାଙ୍ଗିନୀ'' ପ୍ରତି ''ଅର୍ଦ୍ଧାଙ୍ଗ''ର ଏ ଉପେକ୍ଷା କାହିଁକି ? ପଥର ଦେବତାର ପୂଜା କରାଗଲା ବେଳକୁ ଏ ଜୀବନ୍ତ ଈଶ୍ୱରୀମାନଙ୍କ ଅବମାନନା କାହିଁକି ? ସେମାନେ ପତିତା କାହିଁକି ? ଶିବ ମନ୍ଦିରରେ 'ଲିଙ୍ଗ' ହେଉଛି ପ୍ରକୃତରେ ''ଯୋନି ଲିଙ୍ଗ'', ତା'ର ପୂଜା କରାଯାଏ କିନ୍ତୁ....

ମହର୍ଷି ପତଞ୍ଜଳୀଙ୍କ ଅନୁସାରେ ଧର୍ମ, ଅର୍ଥ, କାମ, ମୋକ୍ଷ ହେଉଛି ମଣିଷର ଜୀବନରୂପୀ କଳ୍ପବୃକ୍ଷର ଚାରିଟା ଅମର ଫଳ । ଅମୃତ । ଯୋଗାଚାର୍ଯ୍ୟ ଭଗବାନ ଦେବଙ୍କ ମତରେ ଯୋଗ ଓ ସେକ୍ସ ନିରାକାର ଓ ସାକାର ଦୁଇଟା ଶକ୍ତିର ମିଳନର ଏମିତି ମାଧ୍ୟମ, ଯାହା ଲାଭ କରି ବ୍ୟକ୍ତି ପରମ ଆନନ୍ଦ ଓ ଜୀବନର ମହାନ୍ ଲକ୍ଷ୍ୟ ମୋକ୍ଷ ଲାଭ କରିପାରେ । ପୁରୁଷକୁ ସ୍ତ୍ରୀ ସହିତ ମିଳନ କରାଇବାର ମାର୍ଗ ହେଉଛି ସେକ୍ସ । ଏହି ସେକ୍ସ ଧର୍ମ, ଅର୍ଥ, କାମ, ମୋକ୍ଷ ପଥରେ ଚାଲିବା ଦ୍ୱାରାହିଁ ମିଳିପାରିଥାଏ । 'ପୁରୁଷ' ଓ 'ସ୍ତ୍ରୀ' 'ଶିବ' ଓ 'ଶକ୍ତି'ର ସ୍ୱରୂପ । ହେଲେ ସେ ଦିବ୍ୟ ସ୍ୱରୂପକୁ ମଣିଷ ଅଜ୍ଞାନତାବଶତଃ ଦେଖିପାରି ନାହିଁ ।

ଓଶୋ ତାଙ୍କ ବିଦ୍ରୋହୀ ଦର୍ଶନରେ ସମ୍ଭୋଗ ମାଧ୍ୟମରେ ସମାଧି, ଭୋଗ ମାଧ୍ୟମରେ ଯୋଗ ଓ କାମ ମାଧ୍ୟମରେ ''ରାମ'' ପ୍ରାପ୍ତିର ତତ୍ତ୍ୱ ଅନ୍ୱେଷଣ କରିଛନ୍ତି ।

ଫ୍ରୟଡ୍ ବିଶ୍ୱର ସମସ୍ତ ରକମର ସମ୍ପର୍କକୁ ଯୌନ ସମ୍ପର୍କର ନାମାନ୍ତର ବୋଲି ଦର୍ଶାଇଛନ୍ତି । ଅଡିପସ କମ୍ପ୍ଲେକ୍ସ- ଅଡିଫସର ମାତୃ ସମ୍ଭୋଗର ଜଟିଳ ମନୋବୈଜ୍ଞାନିକ ମାନସିକ ବିକାର, ପାପ, ପ୍ରେମ, ମୃତ୍ୟୁର ପରିଣାମ ବୋଲି ଗୃହୀତ ହୋଇଛି । ସ୍ଥିତିବାଦୀ ସାର୍ତ୍ରେଙ୍କ "Being" ହିଁ 'କାମ' ତା'ଛଡ଼ା ବାକି ସବୁ Nothingness । ନିତ୍ସେ ତାଙ୍କ ବିବଦମାନ ଜୀବନୀ ଅଟୋବାଇଗ୍ରାଫିଆ'ରେ ସେକ୍ସର ସର୍ବୋପରିତାର ଓକିଲାତି କରିଛନ୍ତି ଜୀବନରେ । ଦାର୍ଶନିକ ଶିଲର କହିଛନ୍ତି– ''ଦେହର ଭୋକ ଓ ମନର ଭୋକ ହିଁ ପୃଥିବୀ



Digitized by srujanika@gmail.com

ଶାସନ କରିଆସିଛି ।'' କରୁଛି ଓ କରିବ ମଧ୍ୟ । ଏହା ଏକ ବୈଜ୍ଞାନିକ ସତ୍ୟ । ସେକ୍ସ ଖାଦ୍ୟ, ପାନୀୟ ପରି ମଣିଷର ଏକ ଶାରୀରିକ ଆବଶ୍ୟକତା । ଧର୍ମ, ଆଧ୍ୟାତ୍ମିକତା, ନୈତିକତା କି ରାଜନୀତି କେହି ଏହାକୁ ଫାଙ୍କିପାରିବେ ନାହିଁ । ଜ୍ଞାନବୃକ୍ଷର ଏ ନିଷିଦ୍ଧ ଫଳର ମହତ୍ତ୍ୱ ମଣିଷ ଜୀବନରେ ଚିରନ୍ତନ । ହେଲେ ଯେତେବେଳେ ଏହା ସହିତ ଶସ୍ତା ଓ ମୂର୍ଖତାପୂର୍ଣ୍ଣ ଆମୋଦର ତତ୍ତ୍ୱ ଆସି ମିଶିଲା, ସେତେବେଳେ ତା' ବର୍ଣ୍ଣନା ହାନିକର ଓ ଅନୈତିକ ବୋଲି ସମାଜର ଠିକାଦାରମାନଙ୍କ ଦ୍ୱାରା ବର୍ଜିତ ଘୋଷିତ ହେଲା । ସେହି ବର୍ଜନା ଏଥିଲାଗି ମୁକ୍ତିର ଦ୍ୱାର ଖୋଲିଦେଲା ।

ମୋର ଜଣେ ଘନିଷ୍ଠ ବନ୍ଧୁ ସଞ୍ଜୀବ ପାଢ଼ୀ ଦିନେ କଥା ପ୍ରସଙ୍ଗରେ କହିଥିଲେ— ''ମଣିଷର ଯୌନ ସମ୍ପର୍କ ସମ୍ପୂର୍ଣ୍ଣ ଭାବରେ ଦୈହିକ ସମ୍ପର୍କ, ମାନସିକ ନୁହେଁ । ସାଧାରଣ ଲୋକଙ୍କ 'କାମ' ସାଧାରଣ । ଯୋଗୀ, ମୁନି, ଋଷି ଆଦି ଲୋକଙ୍କ କାମ ଅସାଧାରଣ । କାରଣ ସେମାନେ ଅସାଧାରଣ, ତେଣୁ ସେମାନଙ୍କ ଏହି 'କାମ' ମଧ୍ୟ ଭୟଙ୍କର ।''

ସେ କହିଲେ ଯେ, ଆରମ୍ଭରୁ ପୁରୁଷକୁ ବାରମ୍ବାର ସତର୍କ କରିଦିଆଯାଏ ଯେ ନାରୀ ହେଉଛି ନର୍କର ଦ୍ୱାର । ସେହିପରି ନାରୀକୁ କୁହାଯାଇଥାଏ ଯେ, ସେକ୍ସ ହେଉଛି ପାପ । ଜୀବନରେ ଦୀର୍ଘ ଅଠର ବର୍ଷ ଧରି ସ୍ତ୍ରୀକୁ ଓ ବାଇଶ ବର୍ଷ ଧରି ପୁରୁଷକୁ ଏହି ସାମାଜିକ ପାଠ ପଢ଼ାଇଲା ପରେ ଉଭୟଙ୍କୁ ଧରି ବିବାହ ବନ୍ଧନରେ ବାନ୍ଧି ଦିଆଯାଏ । ବିବାହବେଳେ ମାତ୍ର କେଇ ମିନିଟ୍ ଲାଗି ବୋଧ ମନ୍ତ୍ର ଭାଷାରେ କୁହାଯାଏ ଯେ ''ପତି ହେଉଛି ପରମେଶ୍ୱର, ପତ୍ନୀର ଇହ ଓ ପରକାଳର ଦେବତା ।'' ସ୍ତ୍ରୀକୁ କୁହାଯାଏ ଯେ ସେ ପୁରୁଷର ଅର୍ଦ୍ଧାଙ୍ଗିନୀ । ସେମାନଙ୍କ ମିଳନରେ ହିଁ ପୂର୍ଣ୍ଣତା । ବିଚିତ୍ର ବିରୋଧୀ ମାନସିକତାରେ ହୁଏ ସେମାନଙ୍କ ମିଳନ । ସେଠି ଦେହ ଥାଏ । ଆତ୍ମା ନ ଥାଏ । ଇନ୍ଦ୍ରିୟ ଭୋଗ ସୁଖ ଥାଏ । ପ୍ରଶାନ୍ତି ନ ଥାଏ । କାରଣ ଏତେ ବର୍ଷର ମାନସିକତାର ପରିବର୍ତ୍ତନ ଅସମ୍ଭବ । ଗୋଟାଏ ହାତରେ ଆମେ ନାରୀକୁ ଛାତିରେ ଜାବୁଡ଼ି ଧରୁଛୁ, ଅନ୍ୟ ହାତରେ ତାକୁ ଦୂରକୁ ଠେଲୁଛୁ । ମଝିରେ ମନ ଭିତରର ଫାଙ୍କାରେ ଦୈହିକ ଘର୍ଷଣ (ମିଳନ ?) ହେଉଛି ।

ଶାନ୍ତି ପାଇବା ଲାଗି ଡହଳ ବିକଳ ମନ ଅନ୍ୟର ସଙ୍ଗସୁଖ ଖୋଜେ ।

ସପ୍ତପଦୀର ଅନ୍ନ, ଜଳ, ଧନ, ସୁଖ, ପରିବାର, ଋତୁଚର୍ଯ୍ୟା ଓ ବନ୍ଧୁତ୍ୱର ପ୍ରତିଜ୍ଞାକୁ କେବଳ ସ୍ତ୍ରୀ ଲାଗି ପାଳନ କରିବାକୁ ବାଧ୍ୟ କରାଯାଏ । ପୁରୁଷ ସବୁଥିରେ ଦାୟମୁକ୍ତ । ପତ୍ନୀବ୍ରତ ଧର୍ମ ପାଳନ କରେ ନାହିଁ । ଧର୍ମପତ୍ନୀକୁ କେବଳ ବିଛଣା ମନେକରେ ।

ତେବେ କେଇ ମିନିଟ୍‌ର ସମୟରେ ବଢ଼ା ଯାଇଥିବା ''ପତିପରମେଶ୍ୱର'' ଓ ''ଅର୍ଦ୍ଧାଙ୍ଗିନୀ'' ତତ୍ତ୍ୱ ଆବାଲ୍ୟ ଘୋଷିତ ମାନସିକତାର ପରିବର୍ତ୍ତନ କରିପାରେ ନାହିଁ । ଅସମ୍ଭବ



Digitized by srujanika@gmail.com

ମଧ୍ୟ । ସେମାନଙ୍କ ଶାରୀରିକ ମିଳନ ବେଳେ ମଧ୍ୟ ପୂର୍ବ ଶିକ୍ଷାର ପାପବୋଧର ଜୀବାଣୁ ମନ ଭିତରେ ସଂଚରିତ ଥାଏ । ପ୍ରବଳ କାମାବେଗ ମଧ୍ୟ ତାକୁ ରୋଧ କରିପାରେ ନାହିଁ । ସେମାନେ କିଏ ଜଣେ ପରି ନିଜ ସଙ୍ଗମରେ ଅପରିଚିତର ଦ୍ୱିଧା ନେଇ ପ୍ରବୃତ୍ତ ହୋଇଥାନ୍ତି । ଗୋଟାଏ ପଟେ ଗୋଟାଏ ହାତରେ ଆମେ ସ୍ତ୍ରୀକୁ ନିଜ ଆଡ଼କୁ ଭିଡ଼ି ଆଣୁଛୁ, ଅନ୍ୟ ହାତରେ ତାକୁ ଦୂରକୁ ଠେଲି ଦେଉଛୁ । ମଝିରେ ଯେଉଁ ମନ ଭିତରର ଫାଙ୍କା ସ୍ଥାନ, ସେଇଠି ହେଉଛି ଦୈହିକ ମିଳନ । ଅଥଚ ମନ ବୃନ୍ଦାବନର ଖାତାଟା ଶୂନ୍ୟ । ତେଣୁ ସ୍ତ୍ରୀ ପୁରୁଷକୁ ଆକାଂକ୍ଷିତ ଶାନ୍ତି ଦେଇପାରେ ନାହିଁ । ତା'ର ସଂକୋଚଶୀଳ ଲଜ୍ଜା, ସଂଭ୍ରମତା, ପୂର୍ବ ଶିକ୍ଷାର ବିଷାଣୁ ତାକୁ ବାନ୍ଧି ଦେଇଥାଏ ।

ତେଣୁ ପୁରୁଷ ଏହି ଶାନ୍ତିର ବିକଳତା ନେଇ ସ୍ୱାଧୀନ ବେଶ୍ୟା ପାଖକୁ ଯିବା ଲାଗି ବାଧ୍ୟ ହୁଏ । କାରଣ ପତ୍ନୀକୁ ଜୀବନ ସାରା ସନ୍ତୁଳି ହୋଇ ସେହି ଏକ ରସ ଭୋଗ କରିବାର କର୍ତ୍ତବ୍ୟ ନିର୍ବାହ କରିବାକୁ ମଧ୍ୟ ହେବାକୁ ପଡ଼ିଥାଏ, କିନ୍ତୁ ବେଶ୍ୟା ଆମର କେଇ ମିନିଟ୍, କେଇ ଘଣ୍ଟାର ମୁକ୍ତ ସାଥୀ । ତେଣୁ ସେ କୌଣସି ପ୍ରକାରେ ବାଧା ବି ଦିଏନା, ଯଥେଚ୍ଛାଚାରିତାକୁ ସ୍ୱାଗତ କରେ । ଯଦି ସମାଜରେ ଯୌନ ବର୍ଜନା ନ ଥାନ୍ତା, ତେବେ ବେଶ୍ୟା ପାଖକୁ ଯିବାର କଥା କି ବେଶ୍ୟାବୃତ୍ତି ବି ନ ଥାନ୍ତା । ଏହି ବର୍ଜନା ହିଁ ପୁରୁଷକୁ ଅନ୍ୟ ସ୍ତ୍ରୀ ଓ ସ୍ତ୍ରୀକୁ ଅନ୍ୟ ପୁରୁଷର ଦୁର୍ବାର ଆକର୍ଷଣ ଦେଇଛି । ବିବାହ ବନ୍ଧନର ଉଚ୍ଛେଦ ଓ ଯୌନର ମୁକ୍ତି ବିନା ଏ ସମସ୍ୟାର ସମାଧାନ ହୋଇପାରିବ ନାହିଁ ।

ପ୍ରସିଦ୍ଧ ସମାଜ ବିଜ୍ଞାନୀ ରବର୍ଟ କେ. କେଲି ତାଙ୍କର ପ୍ରସିଦ୍ଧ ଗବେଷଣା ସନ୍ଦର୍ଭ "Courtship, Marriage and the Family" ର 'After word' ରେ ରବର୍ଟ ଫ୍ରାଙ୍କରଙ୍କୁ ଉଦ୍ଧାର କରି କହିଛନ୍ତି ଯେ, "ଅବସର ସମୟରେ କ୍ରମବର୍ଦ୍ଧମାନ ଉତ୍ତେଜିତ ମାନସିକତା, ଗତିଶୀଳତା, ନାରୀ ମୁକ୍ତି ଆନ୍ଦୋଳନ, ନିରୋଧକ ପ୍ରଯୁକ୍ତି, ନ୍ୟୁକ୍ଲିୟର (ଏକାନ୍ନବର୍ତ୍ତୀ) ପରିବାରର ନିଷେଧବାଦ ଓ କ୍ରମବର୍ଦ୍ଧମାନ ଆୟୁ ସତ୍ତ୍ୱେ ମଧ୍ୟ ବୈବାହିକ ପ୍ରଥା ଅଚିରେ ଶିଥିଳ ହୋଇପଡ଼ିବ । ଅବଶ୍ୟ ସେ ପ୍ରକ୍ରିୟାର ଜଟିଳତା ଏବଠୁ ଆରମ୍ଭ ହୋଇଗଲାଣି ।

ଫ୍ରାଙ୍କରଙ୍କ ନିଜ ଭାଷାରେ କହିଲେ:

"An increasing number of men and women will find an alternative mode of coping with these tensions in a more Flexible monogamy allowing for comarital experiences by mutual consent of both parties. X X X Unisex marriages of two or more males or Females will be accepted. Since we can no longer restrict sexual relations to a procreative function, homosexuality can no longer be candemned as immoral or unnatural merely because it is no



Digitized by srujanika@gmail.com

creative, X X X couples disillusioned with the institution of marriage may choose unstructured but stable cohabitation".*

ଫ୍ରାଙ୍କର ଏହି ନୂତନ ସ୍ୱାଧୀନତାକୁ ଏକ ସମଗ୍ର ''ବିଶ୍ୱ ସଂପ୍ରଦାୟର ବହୁଳାୟତ ସଂସ୍କୃତି'' (The pluralistic culture of the Global tribe)ର ଅଂଶବିଶେଷ ବୋଲି ମନେ କରିଛନ୍ତି ।

ଫ୍ରାଙ୍କରଙ୍କ ସେହି ଅନାଗତ ଆଗାମୀ ବେଶ୍ୟାଜଗତ ଅତୀତରେ ପରିଣତ ହୋଇ ସାରିଛି ଅନେକ ଦିନରୁ । ସାଧାରଣ ଜନଜୀବନଠାରୁ ବେଶ୍ୟାର ସଂସାର ଆପାତଃ ଦୁଇପାଦ ଆଗରେ ସ୍ୱାଧୀନ ସଂସାର ।

**ତୁଳସୀ: ଆମ ଅଗଣାର :**

ବେଶ୍ୟାକୁ ବେଶ୍ୟା ଭାବରେ ଚିନ୍ତା କରି ନୁହେଁ, ରକ୍ତ ମାଂସର ମଣିଷ ଭାବରେ ଚିନ୍ତା କରି, ମଣିଷ ଭାବରେ ତା' ମନ ଭିତରକୁ ଉଂକି ମାରି ତା' ସମସ୍ୟାର ସମାଧାନ କରାଯାଇ ପାରିବ, ଅନ୍ୟଥା ଏ ଜରୁରୀ ଅନାବଶ୍ୟକତା ସବୁବେଳେ ଆବଶ୍ୟକ ହୋଇ ରହିଥିବ ।

ସିମୋଁ-ଦ-ବୋଭିଅର ''ସେକେଣ୍ଡ ସେକ୍ସ'ରେ ଉଲ୍ଲେଖ କରିଛନ୍ତି ଯେ, ସ୍ତ୍ରୀ ଜନମ ହୁଏ ନାହିଁ, ତାକୁ କରିଦିଆଯାଏ । ସ୍ତ୍ରୀ ହେଉଛି ପୁରୁଷ ପ୍ରଧାନ ସମାଜର ଏକ କୃତି । ପୁରୁଷ ନିଜ ସତ୍ତା ଓ ଅସ୍ତିତ୍ୱକୁ ବଜାୟ ରଖିବା ଲାଗି ସ୍ତ୍ରୀକୁ ଜନ୍ମରୁ ହିଁ ଅନେକ ନୀତିନିୟମର ଢାଞ୍ଚାରେ ଢାଳି ଆସିଛି ।

ମେରୋ କହନ୍ତି– ''ଜଣେ ବେଶ୍ୟା ଓ ବିବାହିତା ସ୍ତ୍ରୀ ମଧ୍ୟରେ କେବଳ ଗୋଟାଏ ପାର୍ଥକ୍ୟ ରହିଥାଏ, ଏହି ପାର୍ଥକ୍ୟ ହେଉଛି ଖାଲି ମୂଲ୍ୟ ଓ ବୁଝାମଣା ସମୟର ଯାହା ପାର୍ଥକ୍ୟ । ତେବେ ଉଭୟେ ନିଜକୁ ପୁରୁଷ ପାଖରେ ବିକି ଦିଅନ୍ତି । ଉଭୟଙ୍କ ଲାଗି ରତି ବା ସମ୍ଭୋଗ ଏକ ରକମର ସେବା । ଜଣେ ଜୀବନ ସାରା ଲାଗି ନିଜ ଦେହକୁ ଜଣକୁ ଓ ଜଣେ କିଛି ସମୟ ଲାଗି ଅନେକଙ୍କୁ ଭଡ଼ା ଦେଇଥାଏ । ଏ ସମ୍ପର୍କରେ କାର୍ଲ ମାର୍କସ କହନ୍ତି:

---

Robert Francoeur : Eve's New Rib : Twenty faces of sex, marriage and family (New York, Harcourt Brace - Jouarrovich, 1972) PP. 222 - 23



Digitized by srujanika@gmail.com

''ସ୍ତ୍ରୀ ଓ ପୁରୁଷର ପାରସ୍ପରିକ ସମ୍ପର୍କ ହେଉଛି ସବୁଠାରୁ ଅଧିକ ପ୍ରାକୃତିକ ସମ୍ପର୍କ । ତେବେ ବିକାଶ କାଳରେ ଆମକୁ ଦେଖିବାକୁ ପଡ଼ିବ ଯେ ମଣିଷ ପ୍ରକୃତ ଅର୍ଥରେ କେଉଁ ସୀମା ଯାଏଁ ମଣିଷ ହୋଇପାରିଲା ଅର୍ଥାତ୍ ପ୍ରାକୃତିକ ଭାବରେ ତା'ର ବିକାଶ ସହିତ ସେ କେତେ ପରିମାଣରେ ମାନବ ସ୍ୱଭାବ ଗ୍ରହଣ କରିପାରିଲା ।''

ମୋର ଅନ୍ୟ ଜଣେ ଚାକିରିଆ ଯୁବକ ବନ୍ଧୁ କହନ୍ତି: ''ମୋର ପ୍ରତି ମୁହୂର୍ତ୍ତରେ ବେଶ୍ୟା ଲୋଡ଼ା । ନାରୀ ଲୋଡ଼ା । ମୁଁ ଜାଣେ ସେ କେବେ କୌଣସି ବେଶ୍ୟାର ଦ୍ୱାରକୁ ଯାଇନାହାନ୍ତି ଏବଂ ବିବାହିତ । ଗୋଟାଏ ସନ୍ତାନର ବି ଜନକ । ତଥାପି ସେ ବେଶ୍ୟାସକ୍ତ ମାନସିକତାରେ ଗ୍ରସ୍ତ ।

କ୍ଲାରା ଜର୍‌କୀନ୍ ଥରେ କଥା ପ୍ରସଙ୍ଗରେ ଲେନିନଙ୍କୁ ପଚାରିଥିଲେ ''ଯୌନ ସୁଖ ମଧ ଶରୀରର ଭୋକ, ଶୋଷ ପରି । ଏ ଶୋଷର ପୂର୍ତ୍ତି କ'ଣ କରାଯିବା ଅନୁଚିତ ?'

ଉତ୍ତରରେ ଲେନିନ୍ କହିଥିଲେ:

''ଆଦୌ ଅନୁଚିତ ନୁହେଁ । ନିଶ୍ଚିତ ଭାବରେ ପୂର୍ତ୍ତି କରାଯିବା ଉଚିତ । ହେଲେ ସାଧାରଣ ସ୍ଥିତିରେ ଜଣେ ଲୋକ ପକ୍ଷେ ନାଳ ନର୍ଦ୍ଦମାର ପାଣି ବା ଏକ ଚକ୍‌ଚକିଆ ଗ୍ଲାସର ବହୁ ଜଣଙ୍କ ଅଇଁଠା ପାଣି ପିଇବା ଉଚିତ ତ ? ଯଦିଓ ପାଣି ହେଉଛି ସବୁ ପ୍ରାଣୀ ନିମନ୍ତେ ଅତ୍ୟାବଶ୍ୟକ ସଞ୍ଜିବନୀ ।'' ଗ୍ଲାସ୍ ଛଲକୁ ଥିଲେ ପିଇବା ଉଚିତ ଅନ୍ତତଃ ପକ୍ଷେ ମୁଁ ଏ ମତ ସହିତ ଅସମ୍ମତ । ଏବଂ ଯୌନ ସୁଖ ପ୍ରସଙ୍ଗରେ ଏହା ହେଉଛି ଶୋଷ ମେଣ୍ଟାଇବାର ନିହାତି ବାଜେ, ନିକୃଷ୍ଟ ସିଦ୍ଧାନ୍ତ ।''

ଏ କଥା ସତ ଯେ ଯେଉଁ ପାଦରେ 'ପାଏଞ୍ଜଲ' ପିନ୍ଧିବା କଥା, ସେ ପାଦରେ ''ଘୁଙ୍ଗୁର'' ପିନ୍ଧାଇ ଦିଆଯାଇଛି । ଅନ୍ଧାରରେ ଲିଭି ଯାଇଥିବା ଦୀପ ଓ ଅନ୍ଧାରରେ ହଜି ଯାଇଥିବା ଗୀତକୁ ପୁଣି ଥରେ ନୂଆ ମାନବିକ ସନ୍ଦର୍ଭରେ ଖୋଜିବାର ସମୟ ଆସିଛି । ପତନର ବେଦୀ ଉପରେ ବି ଏମାନେ ହେଉଛନ୍ତି ମହାମାୟା ଦେବୀ । କେବଳ ଅର୍ଥ ଓ ଶାରୀରିକ କ୍ଷୁଧା ନୁହେଁ, ପୁରୁଷ ପ୍ରଧାନ ସମାଜ ଓ ସାମାଜିକତା ପ୍ରତି ଏକ ପ୍ରଚ୍ଛନ୍ନ ଘୃଣା ମଧ ଏ ବିଦ୍ରୋହ ବୃତ୍ତି ପଛରେ ରହି ଆସିଛି । ପୁରୁଷ ପ୍ରଧାନ ସମାଜର ଅତ୍ୟାଚାର, ବହିଷ୍କାର, ଉପେକ୍ଷା ଆଦିମ କୌଣସି ନାରୀ ଭିତରେ ସଞ୍ଚାର କରିଥିବା ବିଦ୍ରୋହୀ ଘୃଣାର ବୀଜ ଏମାନେ । କେବଳ ମାନବିକ ସମ୍ବେଦନା, ସମାନତା, ସମତା, ସମାନାଧିକାର, ସମ୍ମାନ ଓ ସର୍ତ୍ତହୀନ ସ୍ୱୀକୃତିହିଁ ଏମାନଙ୍କୁ ମର୍ଯ୍ୟାଦାବନ୍ତ ଭାବରେ ନିଜ ଘରକୁ ବାହୁଡ଼ା ବିଜୟ କରାଇପାରିବ । ପ୍ରତିଶ୍ରୁତି ନୁହେଁ । ପଦକ୍ଷେପ ଲୋଡ଼ା ।



Digitized by srujanika@gmail.com

ଗତ ଥର ପାର୍ଲିଆମେଣ୍ଟ ନିର୍ବାଚନରେ ବିଭିନ୍ନ ବେଶ୍ୟାମାନଙ୍କ ପ୍ରାର୍ଥିତ୍ୱ ସେମାନଙ୍କ ବିକଶିତ ସାମାଜିକ, ରାଜନୈତିକ ଓ ମାନବୀୟ ଚେତନାର ପ୍ରତୀକ । ୧୯୮୨ରେ କାଶ୍ମିରୀବାଈ ଆଗରାରୁ ବିଧାନସଭା ନିର୍ବାଚନରେ ବିଜୟୀ ହୋଇଥିଲେ । ତାଙ୍କ ଲୋକପ୍ରିୟତା ଫଳରେ ଆଗରାର ଏକ ବଜାରର ନାମ 'କାଶ୍ମିରୀ ବଜାର' ରଖାଯାଇଛି । ଭାରତରେ ଅନେକେ ବେଶ୍ୟା କାଉନସିଲର ଅଛନ୍ତି । ଆମେରିକାର ଜଣେ ବେଶ୍ୟା ରାଷ୍ଟ୍ରପତି ପଦ ପାଇଁ ପ୍ରତିଦ୍ୱନ୍ଦ୍ୱିତା କରିଥିଲେ । ସାଂପ୍ରଦାୟିକ ଦଙ୍ଗାଗୋଳବେଳେ ବେଶ୍ୟାମାନେ ଧର୍ମନିରପେକ୍ଷତାର ଚରମ ମାନବୀୟ ଉଦାହରଣ ଉପସ୍ଥାପନ କରିଛନ୍ତି । ''ବସୁଧୈବ କୁଟୁମ୍ବକମ୍'' ଓ ସାମ୍ୟବାଦର ଏମାନେ ଜୀବନ୍ତ ପ୍ରତିମା । ବଗିଚାର ଏ ଫୁଲମାନଙ୍କୁ ମଉଳି ଯିବାକୁ ଦିଅ ନାହିଁ । ଏମାନେ ଆମ ଅଗଣାରେ ତୁଳସୀ, ଆମ ଅଗଣାରେ ସବ୍‌ଜା, ଆମ ଅଗଣାର କ୍ରିଶମସ୍ ଟ୍ରି । ଏମାନେ ଆମ ଘରର ମା' ଭଉଣୀ । ଆମ ଘରର ଝିଅ ବୋହୂ । କୋଠା ନୁହେଁ, ବଜାର ନୁହେଁ, ବଦନାମ ବସ୍ତି କି ଗଳି ନୁହେଁ, ନାରୀନିକେତନ ନୁହେଁ, ଜେଲ୍ ନୁହେଁ ଆମ ଘର ହିଁ ସେମାନଙ୍କ ଘର । ଆମେ ହିଁ ସେମାନଙ୍କ ରକ୍ତ ସମ୍ପର୍କୀୟ । ଆତ୍ମୀୟ ସ୍ୱଜନ୍ ।

ବେଶ୍ୟାବୃତ୍ତି ହେଉଛି ନାରୀର ଦଳିତ, ଅବଦମିତ ଅହଙ୍କାରର, ଆତ୍ମାର ଏକ ସାର୍ବଜନୀନ ଜ୍ୟୋତିର୍ମୟ ଜାଗରଣ । ନାରୀତ୍ୱର ମାନବିକ ଅଧିକାରର ଜାଗରଣ, ଯାହା ତା'ଠୁ ଲୁଟ୍ କରି ନିଆଯାଇଛି । ବେଶ୍ୟାମାନଙ୍କ ନାରୀକରଣ ଲୋଡ଼ା । ମାନବୀୟକରଣ ଆବଶ୍ୟକ । ସତୀତ୍ୱ ଓ ବେଶ୍ୟାବୃତ୍ତିର ସୀମାରେଖା ବର୍ଜନ ଓ ମୁକ୍ତ ଯୌନ ହିଁ ଏହି ଆପତ୍ତିଜନକ ଶବ୍ଦର ବିଲୋପ କରିପାରିବ ।

**ଜୀବନର ଖୋଲା ବହି :**

ହଁ, ସେ ମା' ନୁହେଁ, ଭଉଣୀ ନୁହେଁ, ଝିଅ ବୋହୂ କିଛି ନୁହେଁ । ନାରୀତ୍ୱର ଅଭିଶାପ, ଆଶୀର୍ବାଦ, ଭୋଗ କରୁଥିବା ଜଣେ ଅନ୍ୟମାନଙ୍କ ପରି ସାଧାରଣ ସ୍ତ୍ରୀ । ଏମିତି ଜଣେ ସ୍ତ୍ରୀ, ଯାହାର ସ୍ଥିତି ଅଭିଶାପ ଓ ଆଶୀର୍ବାଦର ଅନେକ ଉପରେ । ଅନେକ ଉର୍ଦ୍ଧ୍ୱରେ । ଅଭିଶାପ ଓ ଆଶୀର୍ବାଦର ସ୍କେଲ ତା' ନିକଟରେ ଅତ୍ୟନ୍ତ ତୁଚ୍ଛ । ଅତ୍ୟନ୍ତ ନିକୃଷ୍ଟ ।

ଯାବତୀୟ ଶିଳ୍ପ ସମୃଦ୍ଧି, ଶିଳ୍ପାୟନ, ବୈଜ୍ଞାନିକ ଉଦ୍‌ଭାବନ, ଆବିଷ୍କାର, ମଣିଷକୁ ଟଙ୍କା ପଇସା, ଯାବତୀୟ ଭୌତିକ ସୁଖ ସୁବିଧା, ସମ୍ପଦ ଯୋଗାଇ ଦେଇଛି, ହେଲେ ତା'ଠାରୁ ଆନ୍ତରିକତା ଛଡ଼େଇ ନେଇଛି । ଆମେରିକା ଭଳି ସମୃଦ୍ଧ ରାଷ୍ଟ୍ରରେ ସବୁ ଥାଇ ବି କିଛି ନାହିଁ । ସେଠାକାର ସମୃଦ୍ଧି ଏକ ଅଭାବର କଲ୍ଲୋଳିତ ମହାସାଗର । ଆମେରିକାର ନାରୀ, ପୁରୁଷ ଆଜି ଭଲପାଇବାର, ପ୍ରେମର ଭୋକରେ ଡହଳ-ବିକଳ । ଟଙ୍କା ପଇସା ଅଛି, ଖାଇବା



Digitized by srujanika@gmail.com

ପିଇବାକୁ ଅଛି, ପିନ୍ଧାଉଡା କରିବାକୁ ଅଛି, ଯାବତୀୟ ସୁଖ ସମୃଦ୍ଧିର ସାଧନ ଅଛି, ଯାହା ଚାହିଁଲେ ତାହା କରିପାରୁଛି, ପାଉଛି- ହେଲେ ଆନ୍ତରିକତା, ଆତ୍ମିକତା, ଭଲପାଇବାର ଘରଟି ଶୂନ୍ୟ । ସବୁ ସମୃଦ୍ଧି ସତ୍ତ୍ୱେ ସେମାନେ ଆଜି ସବୁଠୁ ବେଶି ଗରିବ । ଐଶ୍ୱର୍ଯ୍ୟର ଅଭିଶାପରେ ଜର୍ଜରିତ । ସମୃଦ୍ଧିର ଦାରିଦ୍ର୍ୟରେ ଡହଳ-ବିକଳ ପ୍ରାଣ କେତେବେଳେ ହିପ୍‌ପି, ବିଟିଲ୍‌ସ ରୂପରେ ଆତ୍ମିକ ଶାନ୍ତି ଲାଗି ଉଦ୍‌ଭ୍ରାନ୍ତ ସେକ୍‌ସ ମାଧ୍ୟମରେ ମୁକ୍ତି ଖୋଜୁଛି ତ, କେତେବେଳେ ଏଲ୍.ଏସ୍.ଡି., ମାରିଜୁଆନା, ବ୍ରାଉନ ସୁଗାର, ଅଫିମ, ଗଞ୍ଜା, ଗରଳର ବିଷ ଭକ୍ଷଣ କରି ବିଶ୍ୱସାରା ମୃତ ଶାନ୍ତିର ଶବ କାନ୍ଧେଇ ଶଙ୍କରଙ୍କ ପରି ମୃତ୍ୟୁ ତାଣ୍ଡବ କରି ବୁଲୁଛି । ହେଲେ କାହିଁ ସେ ଆକାଂକ୍ଷିତ ଶାନ୍ତି ? କାହିଁ ସେ ଆତ୍ମାନନ୍ଦ ?

ଭଲପାଇବାର, ଆନ୍ତରିକ ଆତ୍ମୀୟତାର ପରିମଳ ଗାଁ ଖଣ୍ଡେ ପରି ବେଶ୍ୟା ଓ ବେଶ୍ୟାର ସଂସାର । ନୟନାର ଭାଷାରେ କହିଲେ:

''ଆମ ଜୀବନଟା ତ ଖଣ୍ଡେ ଖୋଲା ବହି ପରି ବାବୁ । ପାରୁଛ ତ ପଢ଼ । ହେଲେ ଯେଉଁ ଭାଷାରେ ସେଇଟା ଲେଖାଯାଇଛି, ଲେଖା ଯାଉଛି, ସେ ଭାଷା ଯଦି ଲୋକେ ପଢ଼ି ଜାଣନ୍ତି ନାହିଁ, ବୁଝିପାରନ୍ତି ନାହିଁ, ସେଇଟା ଭିନ୍ନ କଥା । ତା'ଛଡ଼ା ଏଇଟା ମଧ୍ୟ ଜରୁରୀ ନୁହଁ ଯେ, ଯଦିବା କେହି ସେ ଭାଷା ଜାଣିଥିବା ଲୋକ ଥିବେ, ସେମାନେ ଆମ ଜୀବନର ନିକଟତର ଶବ୍ଦାବଳୀ ଓ ପ୍ରତୀକର ଅର୍ଥ ମଧ୍ୟ ଠିକ୍ ଠିକ୍ ବୁଝିପାରୁଥିବେ ।''





Digitized by srujanika@gmail.com



ଏକ ବିଶେଷ ଭଙ୍ଗୀରେ ମେର୍ଲିନ୍ ମନ୍ରୋ

Digitized by srujanika@gmail.com